

## ଡକ୍ଟର ବାସନ୍ତୀ ମହାନ୍ତି

ଜଣେ ଅନ୍ୟ ଜଣକର ଅସାମର୍ଥ୍ୟକୁ, ଅଭାବବୋଧକୁ ଉଜ୍ଜୀବିତ କରି ଅସହନୀୟ ପୀଡ଼ା ଦିଏ ତ ଆଉ ଜଣେ ତା'ରି ସଫଳତାକୁ ସାମର୍ଥ୍ୟକୁ ଅଭିସମ୍ପାତ କରି ଆତ୍ମସନ୍ତୋଷ ପାଏ ।

- ଉତ୍ତରଣୀ

**ଉତ୍ତରଣ**, ଡକ୍ଟର ବାସନ୍ତୀ ମହାନ୍ତି, ପ୍ରକାଶକ : ଏଥେନା ବୁକ୍‌ସ୍, ଭୁବନେଶ୍ୱର-୨, ଅକ୍ଷର : ରଞ୍ଜନା, ପ୍ରଚ୍ଛଦ : ପିଙ୍କିନା, ପ୍ରଥମ ସଂସ୍କରଣ : ୨୦୧୯, ପୃଷ୍ଠା : ୧୨୦, ମୂଲ୍ୟ : **୧୨୦/-**

**Uttarana, Dr. Basanti Mohanty**, Published by : Athena Books, Bhubaneswar-2, Type Setting : Ranjana, Cover Design : Pinkina, Printed at : Athena Books, Bhubaneswar-2, E-mail : rkdas. athena@gmail.com, 1st Edition : 2019, Page : 120, **Price : 120/-**

**ISBN 13 978-81-89593-78-3**

# ଗଳ୍ପ ସୂଚୀ


| | | |
|---|---|---|
| ୧. | ଉତ୍ତରଣ | ୦୫ |
| ୨. | ଭାଉଜ | ୧୨ |
| ୩. | ବାସୁଦେବ | ୨୧ |
| ୪. | ତିନିମାଣିଆର ଇତିବୃତ୍ତ | ୨୭ |
| ୫. | ଭାତୁଡ଼ି | ୩୪ |
| ୬. | ମିଛ ନିଆଁର ସତ ଧୂଆଁ | ୪୨ |
| ୭. | ନିଷ୍ଫଳା ଭୂମି | ୪୮ |
| ୮. | ସହୀଦ | ୫୩ |
| ୯. | ଅମୁହାଁ କାଳିନ୍ଦୁଆତ | ୬୦ |
| ୧୦. | ଦୁଇଟି ନୀଡ଼ହରା ପକ୍ଷୀର ସଙ୍ଗୀତ | ୬୭ |
| ୧୧. | ପତିତା | ୭୨ |
| ୧୨. | ମୁହୂର୍ତ୍ତ | ୭୭ |
| ୧୩. | କଞ୍ଚା ଡାହାଣୀ | ୮୩ |
| ୧୪. | ଉଜୁଡ଼ା ସଂସାର | ୮୯ |
| ୧୫. | ଯା ଦେବୀ ସର୍ବ ଭୂତେଷୁ | ୯୮ |
| ୧୬. | ସ୍ୱପ୍ନ ବୃତ୍ତାନ୍ତ | ୧୦୭ |
| ୧୭. | ବସାବାହୁଡ଼ା ପକ୍ଷୀ | ୧୧୩ |

# ଉଉରଣ

ଉର ଓରଫ୍ ଉର୍ବଶୀ ଓ ଚମ୍ପା । ଦୁହେଁ ସପତ୍ନୀ ନୁହଁନ୍ତି, ଭଗାରୁଣୀ ନୁହଁନ୍ତି । ଏକା ଗୋତ୍ରର ନୁହଁନ୍ତି କି ଏକା ବଂଶର ବି ନୁହଁନ୍ତି । କିନ୍ତୁ ସେମାନଙ୍କ ଭିତରେ ଯେତେବେଳେ ଝଟାପଟା କଳି ଲାଗେ, ଦୁହେଁ ଯେମିତି ସାତ ପୁରୁଷର ଗୋଇ ଖୋଳି ହୁଅନ୍ତି, ଯେ କେହି ହେଲେ ଭାବିବ ଏମାନେ ସଉତୁଣୀ ନଚେତ୍ ଭଗାରୁଣୀ ।

ଲଗାଲଗି ହୋଇ ଦୁହିଁଙ୍କ ଘର । ଯାର ଚାଳପାଣି ତା ଦାଣ୍ଡକୁ ଗଡ଼ିପଡ଼େ ତ ତାର ନଳାପାଣି ଯାର ବାଡି ଭିଜେଇଦିଏ । ଯା' ଘରେ ଫୁଟଣ ଫୁଟିଲେ ତା' ଘର ମହକି ଉଠେ । ରାତି ପାହିଲେ ମୁହଁ ଚାହାଁଚୁହିଁ । ତଥାପି ଜଣକର ଛାଇ ପଡ଼ିଲେ ଆଉ ଜଣକର ନାହି ଡିଏଁ । କେହି କାହାର ଶୀରି ଦେଖିପାରନ୍ତି ନାହିଁ । ଦୁହେଁ ଦୁହିଁଙ୍କୁ ଆକ୍ରମଣ କରିବାର ସର୍ବନିମ୍ନ ସୁଯୋଗ ଟିକକ ହାତଛଡ଼ା କରନ୍ତି ନାହିଁ । ଏଇୟା ଯେମିତି ଦୁହିଁଙ୍କ ଜୀବନର ଚରମ ଲକ୍ଷ୍ୟ । ଦେଖେଇ ଶିଖେଇ ହେଉକି ସିଧାସଳଖ, ପ୍ରତିଦିନ କିଛି ନା କିଛି ପାଇଁ ଦୁହିଁଙ୍କ ଭିତରେ ଖୁମ୍ପାଖୁମ୍ପି ଲାଗିରହିଥାଏ । ଖୁଣ୍ଟା ଦିଆ ଦେଇ ଚାଲିଥାଏ । ସତେ ଅବା ଜନ୍ମ ଜନ୍ମାନ୍ତରର ଶତ୍ରୁ । ଲୋକେ ହସନ୍ତି । କହନ୍ତି- ଶିବଙ୍କ ମୁଣ୍ଡରେ ବେଲପତ୍ର ଚଢ଼ା ପଛେ ବନ୍ଦ ହେଇଯିବ, ଉର ଓ ଚମ୍ପାଙ୍କ ରାମତାଳି ବନ୍ଦ ହେବନାହିଁ ।

ଉର ଶୁଖେଇଥିବା ଧାନ ହେଁସରେ ଚମ୍ପାର କୁକୁଡ଼ାପଲ ଥଣ୍ଟ ମାରିଲେ ତ ଆରମ୍ଭ ହୋଇଗଲା ମହାଭାରତ । କାଠଫାଳିଆ ଅଥବା ମାଟି ଟେଳାଏ ଧରି ସେମାନଙ୍କ ଉପରକୁ ଫିଙ୍ଗୁଫିଙ୍ଗୁ ସିଏ ପଦ୍ମତୋଳା ଡାକି କହିବ-

...ଆଲୋ-ଆଲୋ- ! ଚରିଗଲେ ଲୋ ଚରିଗଲେ । ମଲୁଘର ପଲୁ ମୋ ହେଁସକ ଯାକ ଧାନ ଖାଇଗଲେ ।

ନଅଙ୍କ ବାଧୁଛି ଏ ପଲଙ୍କୁ ।

ଲୋକ ଶୁଣିବାକୁ ମଲଘର ପଲ କୁକୁଡ଼ା ପଲ । କିନ୍ତୁ ଚମ୍ପା ବୁଝେ ଏ ଆକ୍ଷେପ ତା'ରି ଜନମ କଲା ଛୁଆମାନଙ୍କୁ । ତା ଛୁଆପିଲାଙ୍କୁ ଆଡ଼ ଆଖିରେ ଦେଖିପାରେ ନାହିଁ ଉର । ନିଜେ ତ ବାଂଝ । ହାତଗୋଡ଼ ଜାକି ବସିଛି । ସିଏ କେମିତି ବୁଝିବ ଛୁଆଙ୍କ

ଅଦଉତି ? ଉର ମନରେ ଯାହାବି ଥାଉ ଚମ୍ପା ବୁଝେ ଏଇୟା । ତା' ଦେହରେ ନିଆଁ ଖେଣ୍ଟାଟିଏ କିଏ ମାଡ଼ିଦିଏ । ସେ ଘର ଭିତରୁ କିଳିକିଳା ରଡ଼ିଦେଇ କହେ-

ଆଲୋ ! ମୁଁ କ'ଣ କାହାପରି ବାଂଝ କର୍କଟୀ ହେଇଛି କି ? ହାତଗୋଡ଼ନେଇ ବଞ୍ଚିବି ? ମୋ ଛୁଆଙ୍କର ଖେଳା ନେଳା ଦେଖି ସବାଖାଇଙ୍କର ଆଖି କାହିଁକି ଶୁଳେଇ ହେଉଛି ବା ! ଧନ ଦେଖଉଚି ଧନ ! ପୋଡ଼ିଯାଉ ସେ ଧନ । ନିଆଁ ଲାଗିଯାଉ ।

ଏଥର ଆଉ ଉରକୁ ସମ୍ଭାଳେ କିଏ ? ତାକୁ କାଳିସୀ ଲାଗିଯାଏ ଯେମିତି । ତା ଜୀବନର ଚରମତମ ବ୍ୟର୍ଥତା, ତା ଅନ୍ତରର ହା'ହୁତାଶ ସବୁମିଶି ତାକୁ ଅସ୍ଥିର କରିପକାନ୍ତି । ତା ନାରୀତ୍ୱର ଦୁର୍ବଳ ତମ ବିନ୍ଦୁରେ ତୀକ୍ଷ୍ଣ ବର୍ଚ୍ଛାଟିଏ କେହି ବିଦ୍ଧ କରିଦେଲା କି ? ସେ ଯନ୍ତ୍ରଣାରେ ଅତିଷ୍ଠ ହୋଇପଡ଼େ । କ୍ଷତାକ୍ତ ହୋଇଯାଏ ତାର ସର୍ବାଙ୍ଗ । ବିସ୍ଫୋରଣ କଲାପରି ସିଏ କହେ- ତୋ ଗରବକୁ ଭଗବାନ ସହିଲେ ହେଲା ଲୋ ! ଯାହାକୁ ନେଇ ତୋର ଏଡ଼େ ବହପ, ଏଡ଼େ ଗଉଁ ଛ'ମାସ ଛ ପକ୍ଷରେ ସବୁ ନାଶ ଯିବେ ଲୋ । ମୋରି ପରି ହାତଗୋଡ଼ ଜାକି ବସିବୁ ଲୋ ପୁତୁଖାଇ ।

ଦୁଇହାତ ଉପରକୁ ଉଠେଇ ଅଦେଖା ଦେବତାଙ୍କୁ ନେହୁରା ହେଇ କହେ- 'ହେ ଧରମ ଦେବତା !' ତୁ ଦିନରାତି କରୁଚୁ, ତୁ ଭାଙ୍ଗିବୁ ତା ଗରବ । ତା କୁଳ ବୁଡ଼ିବ । ବିଲୁଆ ଡେଇଁବ ତା ଡିହରେ । ଏଇ ଆଖି ଦେଖିବ । ଚମ୍ପାର ଭାଗ୍ୟ ବିଧାତା ଭଳି ଅଭି ସଂପାତ ଦେଇଚାଲେ ଉର ।

ଝିମିଟି ଖେଳରୁ ମହାଭାରତ ଭଳି ସବୁ ପ୍ରସଙ୍ଗର ପରିଣତି ଏମିତି ଚିରାଚରିତ ଶୈଳୀରେ ହୁଏ । ଜଣେ ଅନ୍ୟ ଜଣକର ଅସାମର୍ଥ୍ୟକୁ, ଅଭାବବୋଧକୁ ଉଜ୍ଜୀବିତ କରି ଅସହନୀୟ ପୀଡ଼ା ଦିଏ ତ ଆଉ ଜଣେ ତା'ରି ସଫଳତାକୁ ସାମର୍ଥ୍ୟକୁ ଅଭିସମ୍ପାତ କରି ଆତ୍ମସନ୍ତୋଷ ପାଏ ।

ଭଗବାନଙ୍କୁ ସାକ୍ଷୀରଖି ଚମ୍ପାର ସଂସାରକୁ ଅଭିଶାପ ଦେଲେ ଯେମିତି ତା' ଭରପୁର ସଂସାରର କେଶାଗ୍ରେ କ୍ଷତି ହୁଏ ନାହିଁ, ଚମ୍ପା ଉରର ସଂପତ୍ତି କ୍ଷୟ ହେବାର ଯେତେ କାମନା ପୋଷଣ କଲେବି କାଣୀକଉଡ଼ିଟିଏ ତାର କ୍ଷତି ହୁଏ ନାଇଁ । ଗୋଟାଏ ପରିବାର ପ୍ରାଚୁର୍ଯ୍ୟରେ ଐଶ୍ୱର୍ଯ୍ୟମୟ ହେଲାବେଳକୁ ଆଉ ଗୋଟାଏ ପରିବାର ସନ୍ତାନସନ୍ତତିରେ ଗୌରବମୟ ହୋଇ ଚାଲିଥିଲା ।

ଚମ୍ପାର ଅଷ୍ଟମଙ୍ଗଳାଦିନ ଉର ଆସିଥିଲା ଏ ଗାଁକୁ ବୋହୂହୋଇ । ମୁଣ୍ଡରେ ହାତେ ଲମ୍ବ ଓଢ଼ଣା ଦେଇ ପାହାନ୍ତି ଅନ୍ଧାରରେ ନଈ ତୁଠରେ ଗାଧୋଇଲାବେଳେ ଦୁହିଁଙ୍କର

ପରିଚୟ । ନୂଆ ସ୍ୱପ୍ନ, ନୂଆ କଳ୍ପନା, ନୂଆ ଘର କରଣା ଦୁଇଟି ଅଜଣା ଜାଗାରୁ ଉଡ଼ି ଆସିଥିବା ସମଭାବାପନ୍ନ ଚଢ଼େଇ ଦୁଇଟି । ପରସ୍ପରକୁ ଚିହ୍ନୁଥିଲେ, ସୁଖ ଦୁଃଖ ବାଣ୍ଟୁଥିଲେ, ନିଜକୁ ଖୋଲି ମେଲି ଦେଉଥିଲେ । ଭାବ ଦିଆନିଆ ହେଉଥିଲା । କେତେ ଆବେଗ, ଉତ୍ସୁକତା, ଭାବପ୍ରକାଶ ଥିଲା ସେ ଅନୁଭବରେ ।

ଚମ୍ପାର ପ୍ରଥମ ମାଆ ହେବାର ସମ୍ବାଦରେ ସବୁଠାରୁ ବେଶି ଉତ୍‌ଫୁଲ୍ଲିତା ହୋଇଥିଲା ଉର । ସେଇ ମାଛିଅନ୍ଧାରରେ ଚୁପିଚୁପି ଚମ୍ପା କାନରେ କହିଥିଲା- "ତମର ପୁଅଟିଏ ହେଉ ଅପା । ମୋର ଝିଅଟିଏ ହେଲେ ତମ ପୁଅକୁ ଜୋଇଁ କରିବି । ତମେ ଆଗ ଜିତାପଟ ନେଲ," ଚମ୍ପା ମୁରୁକି ହସା ଦେଇ କହିଲା ।

ହଁ ଗୋ ହଁ- । ଆଜିଠୁଁ ଆମେ ଦୁହେଁ ଦୁଇ ସମୁଦୁଣୀ । ଅପା ଫପା ଡାକ ପଛକୁ ଥାଉ ।

ସତକୁ ସତ ଚମ୍ପାର ପ୍ରଥମ ପିଲା ହେଲା ପୁଅ । ଥାକୁଲୁ ଥାକୁଲୁ ଚେହେରା । ରାଜାପୁଅ ପରି । ସମସ୍ତଙ୍କର ମନଲୋଭା । ଦୁଇ ପରିବାର ଭିତରେ ସତେ ଅବା ସାଜିରେ ବଢୁଛି ପିଲାଟା, ଗେହ୍ଲାରେ ଉର ଡାକେ ଜୋଇଁ ବାବୁ । କିରି କିରି ହସିହସି ଗଡ଼ିଯାଏ ପିଲାଟା । ଉର ଅପେକ୍ଷା କରେ । କେବେ ଆସିବ ତା କୋଳକୁ ସୁନା ଖଡ଼ିକା ଝିଅ ? ସେ ବି ମାଆ ହେବ । ଦୁନିଆ ଆଗରେ ଛାତିରେ ହାତ ବାଡ଼େଇ ତା ନାରୀତ୍ୱର ଜୟଗାନ କରିବ । ଅପେକ୍ଷା କରି କରି ଦିନ ସରେ । ଚମ୍ପାର ପୁଣି ଗଡ଼େ ମାସ । ପୁଣି ଗୋଟାଏ ଗୌରବର ଆବାହନୀ । ଉର ଖୁସି ହୁଏକି ନାହିଁ କେଜାଣି । ଛୁଆମାନଙ୍କର ଖିଲିଖିଲି ହସ ଦେଖିଲେ ତାଛାତି ଭିତରେ କ'ଣଟାଏ ଯେମିତି ଅଟକିଯାଏ । ଛୁଆଟାଏ ଦାଣ୍ଡ ଘାଟରେ ଖେଳୁଥିବାର ଦେଖିଲେ ସିଏ ହାଇଁ ପାଇଁ ହୋଇଯାଏ । ସୁନ୍ଦରିଆ ଛୁଆମାନଙ୍କୁ ଦେଖିଲେ ଲୋଭିଲା ଦୃଷ୍ଟିରେ ଚାହିଁ ରହେ ।

ଚମ୍ପାର ଶରୀର ପୃଥୁଳ ହୁଏ । ସିଏ ମାଠିଆଟିଏ କାଖେଇ ନଈ ପୋଖରୀକୁ ଗଲେ ଉରକୁ ମନେହୁଏ ସିଏ ଦେଖେଇ ହଉଚି, ଜାଣିଶୁଣି ପେଟଟାକୁ ଆଗକୁ ଟିଟେଇ ଚାଲୁଛି । ଦୁନିଆକୁ ସିଏ ମାଆ ହେଉଛି ବୋଲି ଜଣାଉଚି ତ ଉରର ଅସାମର୍ଥ୍ୟତାକୁ ତା ବ୍ୟର୍ଥ ନାରୀତ୍ୱକୁ ଉପହାସ କରୁଛି । ସିଏ କହି ବୁଲୁଚି ଯେ ନାରୀତ୍ୱର ଏ ଗୌରବ ସମସ୍ତଙ୍କ କପାଳରେ ଜୁଟେ ନାହିଁ ଲୋ ! ଯିଏ ଜୀବନରେ ଏ ଗୌରବର ଅଧିକାରିଣୀ ହୋଇନାହିଁ ତା' ଜୀବନ ଧିକ୍ । ତା' ବଞ୍ଚିବାପଣ ଅସାର ।

ଉର ତେଲୁଣି ପୋକ ଭଳି ସଂକୁଚିତ ହୋଇପଡ଼େ, ହୀନ ମନେକରେ ନିଜକୁ । ତା ଅନ୍ତର ଶୂନ୍ୟପ୍ରାନ୍ତରରେ ଈର୍ଷାର କ୍ଷୀଣତମ ବୀଜଟିଏ ଅଙ୍କୁରିତ ହୁଏ । ତାହା ଧୀରେ

ଧୀରେ ମହାଦ୍ରୁମରେ ପରିଣତ ହେବାକୁ ସମୟ ଲାଗେ ନାହିଁ । ସେ ଅଯଥାରେ ଚିଡ଼୍‌ଚିଡ଼୍ ହୁଏ । ନିଜ ଉପରେ ତ କେବେ ସ୍ୱାମୀ ଉପରେ । ପୁଣି କେବେ ଶାଶୁ ନଣନ୍ଦଙ୍କ ଉପରେ । ସୁନାବୋହୂଟି ଧୀରେ ଧୀରେ ବେଙ୍ଗିପିତଳ ପାଲଟିଯାଏ । ଆଚରଣରେ ଓ ଉଚ୍ଚାରଣରେ ବି ।

ଶାଶୁ ମୁହଁ ମୋଡ଼ି କହନ୍ତି- "କୋଉ ଗୁଣକୁ ବା ଏତେ ଉତ୍‌ଗରବ । ମନ ଘେନି ଫଳ, ତୁଠ ଘେନି ଜଳ ।"

ଚମ୍ପାର ପ୍ରସବ ବେଦନା ଆରମ୍ଭ ହୁଏ । ଚମ୍ପାର ଯନ୍ତ୍ରଣାକାତର ସ୍ୱର ଉରର କର୍ଣ୍ଣ ଗହ୍ୱର ସ୍ପର୍ଶ କରେ । ସେ ମୁହଁମୋଡ଼ି ମନେ ମନେ କହେ- ହଁ ନଦେଖିଲା ଲୋକ ଦେଖ ନା- କଇଁଚ କାଢ଼ିଚି ବେକ । ଛୁଆଟା ତ ଜନମ କରିବୁ ଏମିତି ଫଟେଇ ହଉଚୁ କାହିଁକି ? ତୁ ଏକା ଛୁଆ ଜନମ କରୁଛୁ ନା ଦୁନିଆରେ ଆଉ କିଏ କେବେ ଜନମ କରିଛି ବା ! ମୋ ମାଆଲୋ ! ରଙ୍ଗ ଦେଖଉଚୁ !

ସବୁ ଯନ୍ତ୍ରଣାର ଉପଶମ ହୋଇଯାଏ । ଚମ୍ପା ପୁଣି ଗୋଟାଏ ଗୌରବର ଅଧିକାରିଣୀ ହୁଏ । ଉର ଛାତିରେ ଛୁରୀ ଚାଲିଯାଏ । ନିଜକୁ କାଟେ । ସମ୍ପେ । ବିଧାତାକୁ ଦୋଷଦିଏ । ହେଲେ ଫଳ କିଛି ହୁଏନାହିଁ । ବ୍ୟର୍ଥତାର ବିଷ ତାକୁ ଆହୁରି ବିଷାକ୍ତ କରିଦିଏ । ତା ପ୍ରବୃତ୍ତି ତା ସ୍ୱଭାବ ରକ୍ଷ ହୋଇଯାଏ । କୋଉଠି କାହାର ଛୁଆ ଜନମ ହେବାର ଶୁଣିଲେ ଭିତରେ ଭିତରେ ଚିହିଁକି ଯାଏ । ଜ୍ୱଳନ୍ତ ଅଗ୍ନିପିଣ୍ଡ ଭଳି ସେ ଆହୁରି ଭୟଙ୍କର ହୋଇଯାଏ, ନିଜର ସବୁ ବିଫଳତାକୁ ସେ ଦୁନିଆ ଉପରେ ଲଦିଦିଏ । ପିଢାରେ କାଉଟାଏ ବି ବସେଇ ଦିଏ ନାହିଁ । ସ୍ୱାମୀର ସୋହାଗ ଉଣା ହେଲାପରି ଲାଗେ, ଦାଣ୍ଡରେ ଘାଟରେ ଘରେ ବାହାରେ ସବୁଠି ତାରି ଅଯୋଗ୍ୟତାର, ତାରି ବନ୍ଧ୍ୟାପଣର ଚର୍ଚ୍ଚା ହୁଏ ବୋଲି ସେ ଅନୁଭବ କରେ । ପିଲାଦିନେ ଶୁଣିଥିବା କେତେ କଥା କାହାଣୀ କେତେ ଗାଥା ଗାଉଣା ତାର ମନେପଡ଼ିଯାଏ । ଅପୁତ୍ରିକ ନାରୀର ମୁହଁ ଚାହିଁଲେ କ'ଣ ହୁଏ, ଅପୁତ୍ରିକ ନାରୀ ଚାଲିଗଲେ କ'ଣ ହୁଏ । ସେ ସବୁର କାଳ୍ପନିକ ଚିତ୍ର ତା' ଆଖି ଆଗରେ ନାଚିଯାଏ । ଯେଉଁ ପୋଖରୀରୁ ସେ ଜଳପାନ କରେ ସେ ପୋଖରୀ ଶୁଷ୍କ ହୋଇଯାଏ । ଯେଉଁ ଗଛମୂଳେ ସେ ବସିପଡ଼େ ସେ ଗଛ ପତ୍ର ଝଡ଼ା ଦିଏ । ଜୀବନ ତାକୁ ଅସାର ମନେହୁଏ । ବଞ୍ଚିବାପଣ ତୁଚ୍ଛ ଲାଗେ । ଜୀବନ ହାରି ଦେବାପାଇଁ ଇଚ୍ଛା ହୁଏ । ସେ ଅଫଳନ୍ତି ଗଛ । ତା' ଜୀବନରେ କିଛି ମୂଲ୍ୟ ନାହିଁ । ବଡ଼ ବଡୁଆ ତା ହାତରୁ ପାଣି ପାଇବେ ନାହିଁ । ସେ ଅସହାୟ ହୋଇପଡ଼େ । ଦିଅଁ ଦେବତା ମିଛ ଲାଗନ୍ତି, ଜୀବନ ମନେହୁଏ ଖାଠିଏ ମହଣ ବୋଝ । ଜୀବନର ସବୁ ବ୍ୟର୍ଥତା ଅସୂୟାର ରୂପ ନେଇ କୁଢେଇ ହୋଇପଡ଼େ ଚମ୍ପା ଉପରେ । ସେଇ ଯେମିତି ତାର ସବୁ ଦୁର୍ଭାଗ୍ୟ

ପାଇଁ ଦାୟୀ । ତାରି ଛାତି ଉପରେ ପଲ ପଲ ଛୁଆ ଜନମ କରି ସେ ଖେଳେଇବ, ତା ଫଟା କପାଳକୁ ବକଟେ ନାଇଁ ? ତା ସୌଭାଗ୍ୟ ଓ ସୁଖକୁ ଯେମିତି ସେଇ ଛଡ଼େଇ ନେଇଯାଇଛି । ତା' ଛୁଆମାନେ ଉରର ଚକ୍ଷୁଶୂଳ ହୁଅନ୍ତି । ଚମ୍ପା ଖାଇଲା ପିଇଲା, ହସିଲା, ବସିଲା ସବୁକୁ ଖଇଁସ ପାଏ ଉର । ଚମ୍ପା ବି କମ୍ ନୁହେଁ । ଉରକୁ ଦେଖେଇ ଦେଖେଇ ତା ଛୁଆ ପିଲାଙ୍କ ସାଙ୍ଗରେ ଗେଲ ନବଜରେ ଭାସିଯାଏ । ଏ ଘରେ କଅଁଳା ପିଲାଙ୍କ ପାଇଁ ନାନା ବାୟାଗୀତ ଗାଏ ଯେ ଉର କାନରେ ଟାଇଁ ଟାଇଁ ପଡ଼େ । ତା' ଦୁଇ ଆଖିରୁ ଧାର ଧାର ଲୁହ ବହି ତକିଆ ଭିଜେ । ସେ ଅନୁଭବ କରେ ତାର ଅସାମର୍ଥ୍ୟ ହିଁ ଚମ୍ପାର ସାମର୍ଥ୍ୟ । ଧନ ସଂପତ୍ତି ତ ତୁଚ୍ଛ, ଅସାର, ମଣିଷ କମେଇ । କିନ୍ତୁ ବିଧାତା ତା' କୋଳରେ ଯେଉଁ ଅସରପି ଢାଳି ଦେଇଛନ୍ତି ସିଏ ଅମୂଲ ମୂଲ । ତା' ସାଙ୍ଗରେ ସରି ହେବାପାଇଁ ଦୁନିଆର କୋଉ ଧନ ଦରବ ସରି ?

ନିୟତିର କି ବିଚାର ଥିଲା କେଜାଣି ? ହଠାତ୍ ଦିନେ ସବୁ ଓଲଟ ପାଲଟ ହୋଇଗଲା । ରାତିର ନିଶୂନ୍ ପ୍ରହର । ବାହାରେ ଢୁ' ଢୁ' ବରଷା । ସତେ ଅବା ଫାଟିଯାଉଛି ଆକାଶର ଛାତି । ଘଡ଼ଘଡ଼ି ରଡ଼ି ସାଙ୍ଗକୁ ବିଜୁଳିର ଚମକ୍ । ଗାଁ ସାରା ଲୋକଙ୍କ ତାଟି କବାଟ ବନ୍ଦ । ଉର ଉଠି ବସିଲା । ଦିନସାରା ଖଟି ଖଟି ହାଲିଆ ହୋଇ ଶୋଇଥିବା ତା ଗେରସ୍ତ ବଇଦା ପିଠିରେ ହାତମାରି କହିଲା ।

"ଏଇ ଶୁଣୁଛ ? ଗୋଟାଏ ଖରାପ ସ୍ୱପ୍ନ ଦେଖିଲି । ଚମ୍ପାଟାର କ'ଣ ଦିହ ଅସୁଖ ହେଲା କି ?" ସେମିତି ନିଦୁଆ କଣ୍ଠରେ ତା ଗେରସ୍ତ କହିଲା । ତୋର ସେଥିରେ କ'ଣ ଅଛି ? ତୁ ଶୁଅ । ମତେ ବିରକ୍ତ କରନା । ଉର ମାଡ଼ିମକଚି ହୋଇ ଶୋଇଲା, ନିଦ ହେଲା ନାଇଁ, କାନ ଡେରିଲା ଚମ୍ପା ଘରଆଡ଼େ । ଝଡ଼ ବରଷାର ସୁ' ସୁ' ଗର୍ଜନଛଡ଼ା କିଛି ଶୁଭିଲା ନାଇଁ । ସେ ଅସ୍ଥିର ହୋଇପଡ଼ିଲା, ଟିକିଏ ଆଗରୁ ଦେଖିଥିବା ସ୍ୱପ୍ନର ଭୟାନକ ଦୃଶ୍ୟ କଥା ମନେପଡ଼ି ତା ଦେହ ଶୀତେଇ ଉଠିଲା । ଦୁହିଁଙ୍କ ଭିତରେ ରାଗରୁଷା କଥା କଟା କଟିରେ ସେ ଅସହିଷ୍ଣୁ ହୋଇ କ'ଣ କହିଦିଏ ସିନା ସତରେ କ'ଣ ସିଏ ଏମିତି ଅଘଟଣଟିଏ ଚାହୁଁଥିଲା ? ନା କଦାପି ନୁହେଁ । ତା ଚିଙ୍ଗୁଡ଼ି ଭେଳା ଭାସିଯିବେ । ଅନାଥ ହେଇଯିବେ । ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ଦୁଇହାତ ଉପରକୁ ଟେକି କହିଲା- "ହେ ମା ମଙ୍ଗଳା ! ବିଚାରୀଟାକୁ ଭଲରେ ଭଲରେ ଉଦ୍ଧାର କରିଦେ ମା ! ମୁଁ ତତେ କଳାଶାଢ଼ୀ ପିନ୍ଧେଇବି ।"

ଉରର ନିଦଟା ସଂପୂର୍ଣ୍ଣ ଭାଙ୍ଗିଯାଇଥିଲେ ବି ସ୍ୱପ୍ନର ଭୟାବହତାକୁ ସେ ଭୁଲି ପାରୁନଥିଲା । କି ବିଭତ୍ସ ସେ ଦୃଶ୍ୟ । ଚାରିକାତ ମେଲେଇ ପଡ଼ିଛି ଚମ୍ପା । ବିରି

ଓଳିହାପରି ତା ପେଟଟା ଉବୁକି ପଡ଼ିଛି ବାହାରକୁ । ଉଭା ଲଙ୍ଗଳା । ଶଙ୍କରା ଧୋବା କଦଳୀ ଗଡ଼ ଖଣ୍ଡେ କାଟି ଆଣି ଥୋଇଛି । ତା ପେଟକୁ ଦୁଇଫାଳକରି ପିଲାଟାକୁ ବାହାର କରି ଆଣିବ ଆଉ ସେଇ କଦଳୀ ଗଡ଼ଟା ତା ପେଟ ଭିତରେ ଭର୍ତ୍ତି କରିବ । ନହେଲେ ସିଏ ଅନ୍ଧାର ରାତିରେ କୁନ୍ଥେଇବ ଯେ ! ପିଲା କବିଲାଙ୍କୁ ଡରେଇବ । ଚମ୍ପା ଚିରୁଗୁଣୀ ହୋଇଗଲା । ଗାଁଟାସାରା ଲୋକ ଏ କରୁଣ ଓ ବିଭତ୍ସ ଦୃଶ୍ୟ ଦେଖୁଛନ୍ତି । ଶଙ୍କରା ଧୋବା ଟାଙ୍ଗିଆ ଉଞ୍ଚେଇଲା । ସମ୍ଭାଳି ପାରିଲା ନାଇଁ ଉର । ତାର ମନେହେଲା ଚମ୍ପା ମରିନି ବଞ୍ଚିଛି । ତା ଛୁଆବି ବଞ୍ଚିଛି ପେଟରେ । ସେମାନଙ୍କର ଆୟୁଷ ତୁଟିନି । ସୁରୁଜ ଦେବତାକୁ ପାଣିଟେକି ସିଏ ତାକୁ ସଁପିଥିଲା, ତୁ ଚିରା ହେବୁ । ଡେରାହେବୁ । ତୋ ପେଟରେ ଧୋବା କୁରାଢ଼ୀ ଲାଗିବ । ତା'ରି ଅଭିଶାପକୁ ଫଳେଇବାକୁ ଯାଇ ଶଙ୍କରା ଧୋବା ଚମ୍ପାର ପେଟ ଫାଡ଼ିବାକୁ ଆସିଛି । ଶଙ୍କରା ଧୋବାର କୁରାଢୀ ଚୋଟ ଚମ୍ପା ପେଟରେ ଲାଗିବା ଆଗରୁ ଉର ଭିଡ ଠେଲି ଚମ୍ପାର ପେଟ ଉପରେ ହାମୁଡ଼ି ପଡ଼ି ଚିତ୍କାର କରି ଉଠିଲା- "ନାଇଁ ନାଇଁ ସିଏ ବଞ୍ଚିଛି, ବଞ୍ଚିଛି । ତାକୁ ହାଣ ନାଇଁ ।"

ଉର ଆଉଥରେ ଉଠି ବସିଲା । ମୁଣ୍ଡ ପାଖରେ ଥିବା ପିତଳ ଡାଳରୁ ଢକ୍ ଢକ୍ କରି ସବୁତକ ପାଣି ପିଇଗଲା । ଦାଣ୍ଡରେ କୁକୁରଟା କାହିଁକି ଏମିତି ଲହରେଇ ଲହରେଇ କାନ୍ଦୁଛି ? ଉରର ଛାତି ଥରି ଉଠିଲା ।

ଭେରଣ୍ଡାଟାଏ ଡାକୁଛି ପରା ! ସିଏ ତା ଶୋଇଲା ସ୍ୱାମୀର ମୁଣ୍ଡଟାକୁ ଦୁଇହାତରେ ଟିକେ ଉପରକୁ ଉଠେଇ ଦେଲା । ପୁଣି ଘଡ଼ିଏ ଦମ୍ ନେଲା, କାନ ଡେରିଲା । କୁକୁରଟା ସେମିତି ଲହରେଇ କାନ୍ଦୁଥିଲା, ବରଷାଟିକେ ଥମିଲାପରି ଲାଗୁଥିଲା ।

ଉର ଆଉଥରେ ହଲେଇ ଦେଲା ବଇଦାକୁ । କ'ଣ ଏମିତି ଶୋଇଚ ବା ! ଯାଅ ଟିକେ ଦେଖ ! ଚମ୍ପାର କ'ଣ ସୁବିଧା ଅସୁବିଧା ହେଲା କି ?

ବିରକ୍ତ ହେଇ କହିଲା ବଇଦା- "ମଣିଷକୁ ଟିକେ ଶାନ୍ତିରେ ଶୁଆଇ ଦେବନି ଏ ମାଇକିନିଆ ।"

ନିଦ ମଳମଳ ହେଇ ଉଠି ଲୁଙ୍ଗିଟାକୁ ଖୋଲି ସେ ଆଉଥରେ ଗଣ୍ଠିଟାଏ ଦେଲା । ଦାଣ୍ଡ କବାଟ ଖୋଲି ବାହାରକୁ ଆସିଲା । ଚମ୍ପା ଘରେ ପାଟି ଶୁଭୁଛି । ସିଏ ତା ଘରଆଡ଼େ ପାଦ ବଢ଼େଇଲା । ପଛେ ପଛେ ଉର । ଆଶ୍ଚର୍ଯ୍ୟ ହେଲା ବଇଦା । ଯାହାର ଛାଇ ପଡ଼ିଲେ ଯାର ନାହି ଡେଉଁଥିଲା, ଆଜି ତାର ଏ କି ରୂପାନ୍ତର । ସିଏ ଚମ୍ପାର କବାଟରେ ହାତମାରି ଡାକିଲା- "ରଘୁଆ'ଇ । ରଘୁଆ'ଇ କବାଟ ଖୋଲ ।"

ସଙ୍ଗେ ସଙ୍ଗେ କବାଟ ଖୋଲିଗଲା । ବାହାରକୁ ବାହାରି ଆସିଲା ରଘୁଆ । ଚମ୍ପାର ସ୍ୱାମୀ । ସେ ବ୍ୟସ୍ତ ହୋଇ କହିଲା । ସଂଜପହରୁ ସେ କଷ୍ଟ ପାଇଲାଣି । ଏ ଯେଉଁ ରାତି ବିକାଳି । ଝଡ଼ ବରଷା, ଭାବୁଥିଲି ରାତିଟା ପାହିଯାଉ । ସିଏ ଆଉ ସମ୍ଭାଳି ପାରୁନି । କ'ଣ କରିବି ବୁଦ୍ଧିବାଟ ଦିଶୁନି ।

ବଇଦା କିଛି କହିବା ପୂର୍ବରୁ ଉର କହିଲା- ତମେ ଦୁଇ ଜଣଯାକ ଘାଟ ପାଖକୁ ଯାଅ । କାଳିଆକୁ ଉଠେଇ ତା ଅଟୋ ଧରିଆସ । ସେଥିରେ ଅପାଙ୍କୁ ଡାକ୍ତରଖାନା ନେଇଯାଅ । ମୁଁ ପିଲାଙ୍କୁ ସମ୍ଭାଳୁଛି । ଯାଅ ! ଡେରି କରନାଇଁ ।

ରଘୁଆ ଓ ବଇଦା ଦୁହେଁ ନିଜ କାନକୁ ବିଶ୍ୱାସ କରୁ ନଥିଲେ । ଇୟେ କ'ଣ ସତକୁ ସତ ଉରର କଣ୍ଠସ୍ୱର ନା ଆଉ କାହାର ?

ଘରଭିତରୁ ତଥାପି ଚମ୍ପାର ପ୍ରସବ ବେଦନା ଜନିତ ଆର୍ତ୍ତ ଚିତ୍କାର ରାତିର ନିଶୂନ୍ ପ୍ରହରକୁ ଥରେଇ ଦେଉଥିଲା । ସେଇ ଚିତ୍କାରର ପ୍ରତିଧ୍ୱନିରେ ଉରର ହୃଦୟଟା ବରଫ ପିଣ୍ଡୁଳା ଭଳି ବିଗଳିତ ହୋଇପଡୁଥିଲା । ତା ଅନ୍ତର ଭିତରୁ ସବୁ ରାଗ ରଷା, ହିଂସାବାଦ ଆପତ୍ତି ଅଭିଯୋଗ ସେଇଥିରେ ତରଳିଯାଇ ମହାସମୁଦ୍ର ଆଡ଼କୁ ପ୍ରଧାବିତ ହେଉଥିଲା । ନିଶ୍ଚିହ୍ନ ହୋଇଯାଉଥିଲା ସବୁ ମାନ ଅଭିମାନ । ତା ହୃଦୟଟା ବି ମହାସମୁଦ୍ରଭଳି ସଂପ୍ରସାରିତ ହେଇଯାଉଥିଲା, ଆଦିଗନ୍ତ ବିସ୍ତରି ଯାଉଥିଲା ତା' ଚେତନା ଆକାଶପରି ଏକ ଅତିନ୍ଦ୍ରୀୟ ଭାବଟିଏ ତାକୁ ଆବୋରି ବସୁଥିଲା । ସେ ମାନବୀରୁ ଦେବୀ ପାଲଟୁଥିଲା କି ଦାନବୀରୁ ମାନବୀ ପାଲଟୁଥିଲା କେଜାଣି; ଯାହାବି ହେଉ କିଛି ବିଘଟନ ହେଉଥିଲା ତା ଅଲକ୍ଷ୍ୟରେ ।



# ଭାଉଜ

ବିଧବା ଭାଉଜଟିଏ ଘରେ ଅଛି ବୋଲି ପ୍ରସ୍ତାବରେ ବୋଉଟିକେ ମନ ଉଣା କରୁଥିଲା, କିନ୍ତୁ ସୁନନ୍ଦା ଯେଉଁଦିନ ଶୁଣିଲା ସେ ଘରେ ତା'ର ଶାଶୁ ନାହାନ୍ତି କି ନଣନ୍ଦ ନାହାନ୍ତି, ଯିଏ ତାର ବର ହେବ ତା'ର ବିଧବା ଭାଉଜଟିଏ କେବଳ ଅଛି ଯିଏ ତାକୁ କୋଳେଇ କାଖେଇ ମଣିଷ କରିଛି, ସେ ମନେ ମନେ ଆଶ୍ୱସ୍ତ ହୋଇଥିଲା, ଅନ୍ତତଃ ଶାଶୁ ନଣନ୍ଦଙ୍କ ଗଞ୍ଜଣା ଦୃଷ୍ଟିରୁ ସେ ସଂପୂର୍ଣ୍ଣ ନିରାପଦ, କେବଳ ସେତିକି ନୁହେଁ ତା ବ୍ୟକ୍ତିସତ୍ତାର କୋଉ ଅନ୍ଧାରି କୋଣରେ ଦୁଷ୍ଟ ବୁଦ୍ଧିଟିଏ ମୁଣ୍ଡଟେକି ତାକୁ ଉତ୍ସାହିତ କରିବାକୁ ବି ଛାଡି ନଥିଲା । ବିଧବା ମଣିଷଟି ଉପରେ ନିରଙ୍କୁଶ କ୍ଷମତା ବିସ୍ତାର କରି ନିଷ୍କଣ୍ଟକ ରାଜ୍ୟ ଭୋଗ କରିବାର କାମନାଟିଏ ତାକୁ କୁତୁକୁତୁ କରିଥିଲା । ଶାଶୁହୀନ ଶାଶୁଘରର ସାମ୍ରାଜ୍ୟରେ ସେ ଏକଛତ୍ର ସାମ୍ରାଜ୍ଞୀ । ସ୍ୱାମୀମାନଙ୍କୁ କରଗତ କରିବାର କଳା କାହାକୁ ଶିଖିବାକୁ ପଡ଼େ ନାହିଁ । ସାଙ୍ଗସାଥୀ ଓ ନିଜର ଦୁଇ ଦୁଇଟା ଭାଉଜଙ୍କ ପାଖରେ ଚଳି ସେ ଯାହା ଅଭିଜ୍ଞତା ହାସଲ କରିଛି, ନୂଆଜୀବନଟିଏ ଗଢ଼ିବାର ସ୍ୱପ୍ନରେ, କଳ୍ପନାର ସୋରିଷ ଫୁଲ ରଙ୍ଗରେ ହଳଦୀଗୁରୁଗୁରୁ ହୋଇ ପ୍ରଥମରୁ ହିଁ ସୋରିଷ କିଆରୀର ପାଳଭୂତ ତଡ଼ିବାର ମନସ୍କ ହେଇ ସେ ଶାଶୁଘରେ ପାଦ ଥୋଇଥିଲା ।

ସବାରୀରୁ ଓହ୍ଲାଇବା ପରେ ଶଙ୍ଖହୁଳହୁଳି ଗହଳ ଚହଳ ଭିତରେ ଓଢ଼ଣା ତଳୁ ସେ ଖୋଜି ହେଉଥିଲା ସେଇ ମଣିଷକୁ ଯାହାକୁ ସେ ମୂଳରୁ ହିଁ ନିଜର ପ୍ରତିଦ୍ୱନ୍ଦ୍ୱୀ ବୋଲି ଗ୍ରହଣ କରିନେଇଥିଲା । ସେ ନିରାଶ ହୋଇଥିଲା । ବାହାଘରର କର୍ମଚଞ୍ଚଳତା ଭୋଜିଭାତ ବନ୍ଧୁବାନ୍ଧବଙ୍କ ଗହଳ ଚହଳ ଭିତରେ ଏ ଚରିତ୍ରଟି ସହ ପରିଚିତ ହେବାର ସୁଯୋଗ ପାଇ ନଥିଲା ସୁନନ୍ଦା, ତାର ସକଳ ଆବେଗିକ ଉତ୍କଣ୍ଠାକୁ ସେ ବହୁକଷ୍ଟରେ ଦମନ କରି ରଖିଥିଲା ।

ପ୍ରଭଞ୍ଜନର ପ୍ରଥମ ସମ୍ଭାଷଣ ଥିଲା ସୁନନ୍ଦା ପାଇଁ । ମୋ ଭାଉଜ ମୋ ପାଇଁ ଦେବୀ, ତାଙ୍କୁ ଅସୁଖୀ କରି ଆମେ କେବେ ବି ସୁଖୀ ହୋଇ ପାରିବା ନାହିଁ । ତମେ କଥା ଦିଅ ସୁନନ୍ଦା, ତମେ ଏମିତି କିଛି କରିବ ନାହିଁ, ଯେଉଁଥିରେ ସେ କଷ୍ଟ ପାଇବେ ।

ସୁନନ୍ଦା ଦେହରେ ଯେମିତି କେହି ମେଞ୍ଚାଏ ଡହ ଡହ ରଡ଼ ଅଙ୍ଗାର ମାଡ଼ିଦେଲା । ଘୃଣା ଓ ଅବଜ୍ଞାର ଏକ ପତଳା ଆସ୍ତରଣ ତା ସର୍ବାଙ୍ଗରେ ଛାଇ ହୋଇଗଲା । ବାସର

ରାତିର ପ୍ରେମ ନିବେଦନ ଭାଷା ପୁଣି ଏତେ କଠୋର ଶୁଷ୍କ ହତାଶା ବ୍ୟଞ୍ଜକ ହୋଇ ପାରେ ? ଇୟେ କି ପ୍ରକାରର ପ୍ରେମ ଓ ପ୍ରତିଶ୍ରୁତି ? ଅନ୍ୟମନସ୍କ ହୋଇ ପଡ଼ିଥିଲା ସୁନନ୍ଦା । ପ୍ରଭଞ୍ଜନ ସୁନନ୍ଦା ପିଠିରେ ହାତରଖି ଆଦର କରି କହିଥିଲା ।

"ପିଲାଦିନୁ ମାଆକୁ ହରେଇଥିଲି । ମାଆର ମୁହଁ ମୋର ଭଲକରି ମନେ ନାହିଁ । କିନ୍ତୁ ଭାଉଜଙ୍କ ପାଇଁ ମୁଁ କେବେ ବି ମୋ ମା'ର ଅଭାବ ଅନୁଭବ କରିନାହିଁ ।"

ସୁନନ୍ଦା ମୁହଁ ପୋତି ବସିଥିଲା ।

ତାର କଅଁଳ ଛନ୍ନଛନ୍ନ ଶାଗ କିଆରୀକୁ ଯେମିତି ଅରଣା ମଇଁଷିଟିଏ ଦଳିଚକଟି ନଷ୍ଟ କରିଦେଲା ଓ ତାର ସକଳ ସ୍ୱପ୍ନ କଳ୍ପନାର କୋଣାର୍କଟା ଏଇ ମୁହୂର୍ତ୍ତରେ ଭୂଲୁଣ୍ଠିତ ହୋଇ ପଡ଼ିଲା । ମଧୁଶଯ୍ୟା ଗୃହଟା ତାକୁ ଏକ ଯନ୍ତ୍ରଣାର ଜତୁଗୃହ ଭଳି ମନେହେଲା, ସେ ଆତଙ୍କିତ ହୋଇ ପଡ଼ିଲା, ତଥାପି ନିଜ ଆବେଗ ଉପରେ ନିୟନ୍ତ୍ରଣ ରଖି ସେ ଦୃଷ୍ଟି ଟେକି ପ୍ରଭଞ୍ଜନର ମୁହଁକୁ ଚାହିଁଲା ।

ଅଶିଣ ଆକାଶର ଜହ୍ନଟିଏ ପରି ଦିଶୁଥିବା ସୁନନ୍ଦାର ସୁନ୍ଦର ମୁହଁଟି ଆଡ଼େ ଚାହିଁ ଅପରାଧୀ ଶିଶୁଟିଏ ଭଳି ପ୍ରଭଞ୍ଜନ ଦୃଷ୍ଟି ତଳକୁ କଲା ।

ସେଇ ମୁହୂର୍ତ୍ତକର ଚାହାଣୀ ଭିତରେ ବି ସୁନନ୍ଦା ଆକଳନ କରିନେଲା ଏ ଆଖିରେ ସ୍ୱାମୀପଣର ଅହଂତ୍ୱ ନାହିଁ, ନିଜର ବିଚାରକୁ ଅନ୍ୟ ଉପରେ ଲଦି ଦେବାର କ୍ରୂରତା ବି ସେ ସେଠାରେ ଖୋଜି ପାଇଲା ନାହିଁ । ବରଂ ଏକ ଶିଶୁ ସୁଲଭ ସମ୍ମୋହ ଶକ୍ତି ସେଇ ସୁନ୍ଦର ନିରୀହ ଆଖିଦୁଇଟାରୁ ସଂଚରି ଆସି ସୁନନ୍ଦାର ବ୍ୟକ୍ତିସତ୍ତାକୁ ବଶୀଭୂତ କରିଦେଲା । ଏଇ କେଇ ମୁହୂର୍ତ୍ତ ଆଗରୁ ବେଦୀରେ ବସି ଯାହା ସହତାର ହସ୍ତଗଣ୍ଠି ପଡ଼ିଥିଲା, ଜନ୍ମ ଜନ୍ମାନ୍ତର ସାଥୀ ହେବା ପାଇଁ ଅଗ୍ନିକୁ ସାକ୍ଷୀ ରଖି ପୁରୋହିତଙ୍କ ନିର୍ଦ୍ଦେଶ ଅନୁସାରେ ମନ୍ତ୍ରପାଠ କରିଥିଲା, ସାତଥର ଅଗ୍ନି ପ୍ରଦକ୍ଷିଣ କରି ଯିଏ ତାଙ୍କୁ ସୁରକ୍ଷା ଦେବାର ପ୍ରତିଶ୍ରୁତି ବହନ କରିଥିଲା, ସେ ପାଲଟି ଯାଇଛି ଦୁଗ୍ଧପୋଷ୍ୟ ଶିଶୁଟିଏ । । କୁନି କୁନି ଓଠରେ, ଦରୋଟି ଭାଷାରେ ସିଏ ତାକୁ ମାଆ ବୋଲି ସମ୍ବୋଧନ କରି ତା ପାଖରେ ଅଳି କରୁଚି, ଅର୍ଦ୍ଦଳୀ କରୁଛି । ନିର୍ଭୟ ଆଶ୍ରୟଟିଏ ଖୋଜୁଛି, ପ୍ରତିଶ୍ରୁତିଟିଏ ମାଗି ନେଉଛି । ସେ ମହମବତୀ ଭଳି ବିଗଳିତ ହୋଇପଡ଼ିଲା, କେମିତି ଗୋଟିଏ ବାତ୍ସଲ୍ୟଭାବ ତାର ସମଗ୍ର ସତ୍ତାକୁ ଆଚ୍ଛନ୍ନ କରିଦେଲା । ତାକୁ ମନେହେଲା ସିଏ ଯେମିତି ସୁନନ୍ଦା ନୁହେଁ ଆଉ କେହି ଜଣେ । ତା ଭିତରେ ଯେ ଏତେ ନମନୀୟତା, କୋମଳପଣ ଏତେ ଭାବସ୍ନିଗ୍ଧତା ଥିଲା, ସେ ଏଇ ପ୍ରଥମ ଥର ଆବିଷ୍କାର କଲା । ମାଆ, ଭାଇ ଭାଉଜ ସାଙ୍ଗସାଥୀ ଗହଣରେ ଗର୍ବୀ ଅହଂକାରୀ ସ୍ୱାର୍ଥପର ମଣିଷଟିଏ ବୋଲି ଅପଖ୍ୟାତି ଅର୍ଜିଥିବା ସୁନନ୍ଦାର ଯେମିତି ଏଇ ଅପମୃତ୍ୟୁ ହେଲା । ତା ଭିତରୁ ସଦ୍ୟଫୁଟା ଗଙ୍ଗଶିଉଳି ଭଳି ଭୁରୁଭୁରୁ ବାସ୍ନାଥିବା ଶୁଭ୍ର ଶୁଦ୍ଧ ଅସ୍ତିତ୍ୱଟା ବାହାରି ଆସି ମଧୁଶଯ୍ୟା ଗୃହକୁ ଆହୁରି ମହକମୟ

କରିଦେଲା । ଆଷାଢୁଆ ସୂତା ବନ୍ଧା ହୋଇଥିବା ତାର ମେହେନ୍ଦୀ ବୋଳା ହାତଟାକୁ ଓଢ଼ଣା ଭିତରୁ ବାହାର କରି ସେ ପ୍ରଭଞ୍ଜନ ହାତ ଉପରେ ରଖିଲା ଓ ଧୀର କମ୍ପିତ କଣ୍ଠରେ କହିଲା-ତମେ ଏ ସଂପର୍କରେ ନିଶ୍ଚିନ୍ତ ରୁହ । ସେମିତି କିଛି ଅଭିଯୋଗ କରିବାର ସୁଯୋଗ ମୁଁ ତମକୁ କେବେ ହେଲେ ଦେବିନାହିଁ ।

ଆଶ୍ୱସ୍ତ ହେଲା ପ୍ରଭଞ୍ଜନ ।

ମଧୁଶଯ୍ୟା ରାତ୍ରିର ମଧୁର ମାଦକତା ଯାହାପାଇଁ ଏମିତି ଭାବଗାମ୍ଭାର୍ଯ୍ୟ ହୋଇ ପଡ଼ିଥିଲା ସେଇ ମଣିଷଟାକୁ ସୁନନ୍ଦା ପ୍ରଥମ କରି ଯେତେବେଳେ ଭେଟିଲା ସେ ଅଭିଭୂତ ହୋଇ ପଡ଼ିଥିଲା । ଏତିକି ସୌନ୍ଦର୍ଯ୍ୟର ଅଧିକାରିଣୀ କୋଉ ମଣିଷ ହୋଇପାରେ ? ବୟସ ଆଗରେ ଯୌବନଟା ହାର ମାନେ ବୋଲି ସେ ଶୁଣିଥିଲା କିନ୍ତୁ ଏଠି ସେ ଦେଖୁଛି ଓଲଟା । ଏଇ ମଣିଷଟାର ଯୌବନ ପାଖରେ ଯେମିତି ବୟସଟା ହାର ମାନିଯାଇଛି । ବୈଧବ୍ୟର ନିରାବରଣ ସାଧାସିଧା ରୁଚିପୂର୍ଣ୍ଣ ବେଶବାସ ଯେମିତି ସେ ସୌନ୍ଦର୍ଯ୍ୟକୁ ଆହୁରି ଶାଣିତ ଓ ବ୍ୟକ୍ତିତ୍ୱ ସଂପନ୍ନ କରିଦେଇଛି । ଏ ମଣିଷଟା କ'ଣ କେବେ କାହାର ପ୍ରତିଦ୍ୱନ୍ଦ୍ୱୀ ହୋଇପାରେ ?

ପ୍ରଭଞ୍ଜନ କହୁଥିଲା, ସୁନନ୍ଦା ! ଇୟେ ଭାଉଜ ! ଏ ଘରର ସର୍ବମୟୀ କର୍ତ୍ତୀ । ତାଙ୍କର ଅଖଣ୍ଡ ସାମ୍ରାଜ୍ୟରେ ଆମ ସବୁ ଅନୁଗତ ପ୍ରଜା ।

ଖଟ ଉପରୁ ତଳକୁ ଓହ୍ଲେଇ ସୁନନ୍ଦା ସମ୍ଭ୍ରମରେ ତାଙ୍କୁ ମୁଣ୍ଡିଆଟିଏ ମାରିଲା । ଅଛହସି ନଇଁ ପଡି ସେ ସୁନନ୍ଦାର ଦୁଇ ବାହୁକୁ ଧରି ନିଜ ଆଡ଼କୁ ଆଉଜାଇ ଆଣିଲେ । ତା ଦୁଇ ହାତରେ ଦୁଇପଟ ସୁନାକଙ୍କଣ ଗଳେଇ ଦେଇ ସେ କହିଲେ ଏ ଦୁଇ ପଟକ ଘରର ଖାନ୍‌ଦାନୀ କଙ୍କଣ, ବଡବୋହୂର ପ୍ରାପ୍ୟ । ମୋ ଶାଶୁ ମୋତେ ଦେଇଥିଲେ । ଆଜିଠୁଁ ଇୟେ ତୋର, ତାର ସମ୍ମାନ ରଖିବୁ । ସୁନନ୍ଦା ଅନୁଭବ କରୁଥିଲା ସେ ଶବ୍ଦ ଗୁଡ଼ାକ ଶେଷ ଆଡ଼କୁ କେମିତି ବତୁରୀ ଯାଉଥିଲା କୋହରେ । ଲାଗୁଥିଲା ଓଜନିଆ ଓଜନିଆ ।

କୃତଜ୍ଞତାରେ ଭିଜିଯାଇ ଏ ଉପହାରକୁ ସେ ସ୍ୱୀକାର କରିଥିଲା । ମନ୍ତ୍ରମୁଗ୍ଧ ହୋଇ ପ୍ରଭଞ୍ଜନ ଦୁହିଁଙ୍କୁ ଦେଖୁଥିଲା । ଦୟା କ୍ଷମା ପ୍ରେମ ମମତାର ମୂର୍ତ୍ତିମୟୀ ଦେବୀ ଭାଉଜ, ଅଭିଜ୍ଞତାରେ ପାକଳ ହୋଇ ଯାଇଥିବା ତାଙ୍କର ବ୍ୟକ୍ତିତ୍ୱ । ସମ୍ମାନରେ ଭକ୍ତିରେ ସମ୍ଭ୍ରମରେ ମୁଣ୍ଡ ନଇଁ ଯାଇଥିଲା ତାର । ଏ ଘରକୁ ଆଉ କିଏ ଆସିଲେ କାଳେ ଏ ଦେବୀ ମୂର୍ତ୍ତିକୁ ଅସମ୍ମାନ କରିବ, ସେଇଥିପାଇଁ ବୟସ ଗଡ଼ିଯାଉଥିଲେବି ବିବାହ କରିବାକୁ ସେ ରାଜି ନଥିଲା ଜମା । ଶେଷକୁ ସେଇ ଦେବୀ ମୂର୍ତ୍ତିର ହିଁ ଜୟ ହେଲା । ସେ ଅଡ଼ିବସିଲେ, ଘରେ ଚୁଲୀ ଜଳିଲା ନାହିଁ । ସେ କହିଲେ ଲୋକ କହୁଛନ୍ତି ତମର ସଂପତ୍ତି ଖାଇବି ବୋଲି ମୁଁ କୁଆଡେ ତମକୁ ବାହା କରାଇ ଦେଉ ନାହିଁ, ମୁଁ ଲୋକଙ୍କର ନିନ୍ଦା ଅପବାଦ ଶୁଣିପାରିବି ନାହିଁ । ତମେ ଯଦି ବାହା ନହବ ତାହେଲେ ଘର ଅଲଗା କର । ଧନସଂପତ୍ତି

ବାଣ୍ଟିଦିଅ । ହାତରେ ଫୁଟେଇ ଖାଅ । ମୋର ସଖ୍ୟ ପାଇଲେ ପୁଅଟାକୁ ମଣିଷ କରିବି, ନ ହେଲେ ତା ଭାଗ୍ୟରେ ଯାହା ଥିବ ।

ନିରବ ରହିଲା ପ୍ରଭଞ୍ଜନ, ସେ ଭଲଭାବରେ ଜାଣିଥିଲା, ତାର ହାତରେ ଫୁଟେଇ ଖାଇବା ଭାଉଜଙ୍କ ଦେହରେ ଯିବ ନାହିଁ । ସେ ନିଜେ ହିଁ ପାଇବେ କଷ୍ଟ । ସେ ବି ତା'ର ରଣ କୌଶଳ ଆରମ୍ଭ କରିଦେଲା ।

ସଂଧ୍ୟାରେ ଷ୍ଟୋଭ୍‌ଟିଏ ଡେକ୍‌ଚିଟିଏ ଓ କଡ଼େଇଟିଏ କିଣି ଆଣି ଅଗଣାରେ ଥୋଇ ଦେଇ ସେ କହିଲା-

ଭାଉଜ ମତେ ସେ ସମ୍ପତ୍ତି ବାଡ଼ି ବାଣ୍ଟ ଫାଣ୍ଟ କଥା କହନାଇଁ । ମୋତେ ମୁଠାଏ ଫୁଟେଇଦବାକୁ ଯଦି ତମକୁ କଷ୍ଟ ହେଉଛି, କାଲିଠୁଁ ମୋ ପାଇଁ ପଡ଼ି ଦୁଇଟା ପଠେଇ ଦବ । ମୁଁ ହାତରେ ରାନ୍ଧି ଖାଇବି । ଦରକାର ହେଲେ ତମ ପାଇଁ ବି ଦୁଇଟା ଫୁଟେଇ ଦେବି ।

କୃତ୍ରିମ କ୍ରୋଧରେ ପ୍ରଭଞ୍ଜନର କାନ ଦୁଇଟା ମୋଡ଼ି ଦେଇ ସେ କହିଥିଲେ-

ଆଉ କେତେ ମୋ ଜୀବନ ଜଳେଇ ପୋଡ଼େଇ ଖାଇଲେ ତମ ଆତ୍ମା ଶାନ୍ତି ହବ ? ଗୋଟାକ ଉପରେ ତ ଭରସା କରିଥିଲି ଯେ ସିଏ ଏମିତି ମଝି ଦରିଆରେ ଛାଡ଼ିଦେଇ ଚାଲିଗଲା, ତମେ ତ ସେଇ ଲାଉର ମଞ୍ଜି, ଚଣ୍ଡାଳ ଯମ ହେଲେ ମୋତେ ଉଠେଇ ନିଅନ୍ତା । ସିଏ ବି ମୋ ନାଁ ଗାଁ ଭୁଲି ଗଲାଣି, ତାଙ୍କର ସଫେଦ କାନିଟାକୁ ମୁହଁରେ ଦେଇ ସୁଁ ସୁଁ ହେଲେ ।

ପ୍ରଭଞ୍ଜନ ଧୀରେ ବାହାରକୁ ଚାଲିଯାଇ ଆତ୍ମରକ୍ଷା କଲା, ଭାଉଜଙ୍କର ଯୋଜନା ବିଫଳ ହେଲା ।

ଏଥର କିନ୍ତୁ ସତକୁ ସତ ସେ ସିରିଅସ୍ ଥିଲେ, ପ୍ରଭଞ୍ଜନ ହାତକୁ ଚା' କପ୍‌ଟା ବଢ଼େଇ ଦେଲା ବେଳକୁ ତାଙ୍କ ଫୁଲିଲା ଫୁଲିଲା ଆଖି ଓ ଫଣ ଫଣ ମୁହଁ ଦେଖି ସେ ପଚାରିଲା- "ତମ ଦେହ ଭଲ ନାହିଁକି ଭାଉଜ ?"

ବିସ୍ଫୋରଣ କଲାଭଳି ସେ କହିଲେ- "ଏତେ ଚିନ୍ତା ତମର ମୋ ଦେହ ମୁଣ୍ଡ ପାଇଁ" । ମୋତେ ଆଉ ତମେ ଏ ଦୁନିଆରେ ରଖେଇ ଦବନାଇଁ, ମୁଁ ଏତେ ନିନ୍ଦା ଅପବାଦ ଶୁଣି ପାରିବି ନାଇଁ, ମରଣ ଠୁଁ ଏ ଅପବାଦ ବଳି ଯାଉଛି । ତମକୁ ନେହୁରା ହଉଚି, ତମେ ମୋତେ ଟିକେ ବିଷ ଆଣିଦିଅ । ତା'ପରେ ତମେ ଅଭିଆଡ଼ୀ ରୁହ, କି ବାଡୁଅ ରୁହ, ଲୋକ ମୋତେ ଆଉ ନିନ୍ଦା ଦେବେ ନାହିଁ ।

ପ୍ରଭଞ୍ଜନ ବ୍ୟସ୍ତ ହୋଇ କହିଲା-

କ'ଣ ହୋଇଛି ଭାଉଜ ? ଖୋଲି କରି କୁହ, ତମକୁ ପୁଣି କିଏ କି ନିନ୍ଦା ହେଲା ? ଏତେ ସାହସ କାହାର ?

ଆଖିରୁ ଲୁହପୋଛି ସେମିତି କାନ୍ଦିଲା ସ୍ୱରରେ ସେ କହିଲେ-କହିବେନି ? ତମେତ କହିବାକୁ ସେମାନଙ୍କୁ ସୁଯୋଗ ଦେଉଛ, ସେମାନେ ମାତେ କହିବେନି ତ ଆଉ କାହାକୁ କହିବେ ? ପ୍ରଭଞ୍ଜନ ଅବୁଝା ଆଖିରେ ଡବ ଡବ କରି ଚାହିଁଥିଲା ତାଙ୍କ ଲୁହଭିଜା ମୁହଁ ଆଡ଼େ । ତଳକୁ ମୁହଁ କରି ସେ କହିଲେ-

ତମର ବାହା ବୟସ ଗଡ଼ିଯାଉଚି, ମୁଁ କୁଆଡେ ତମକୁ ବାହାକରୁନି ମୋ ସ୍ୱାର୍ଥ ପାଇଁ । ମୋ ଚରିତ୍ରକୁ ଲୋକେ ଆକ୍ଷେପ କରିବା ଆରମ୍ଭ କଲେଣି ।

ଏ ସବୁର ଅର୍ଥ ବୁଝିବା ପାଇଁ ପ୍ରଭଞ୍ଜନର ଯଥେଷ୍ଟ ବୟସ ହୋଇଥିଲା । ତା ହୃଦୟ ବିଦୀର୍ଣ୍ଣ ହୋଇଗଲା । ଖଣ୍ଡ ଖଣ୍ଡ ହୋଇଗଲା ତାର ବ୍ୟକ୍ତିସତ୍ତା । ସେ ଆର୍ତ୍ତନାଦ କରି ଉଠିଲା । ଭାଉଜ କ'ଣ ପାଗଳ ହେଇଗଲେ । ଏଭଳି ଅରୁଚିକର କଥାଗୁଡାକ ତାଙ୍କ ମୁହଁରେ ଉଚ୍ଚାରିତ ହେଉ, ଏ କଥା ସେ ଆଦୌ ଚାହୁଁ ନଥିଲା । ଅସହିଷ୍ଣୁ ହୋଇ ସେ କହିଲା-

"ବାସ୍ - ଭାଉଜ- ବାସ୍ ! ତମର ଯାହା ଇଚ୍ଛା ସେୟା କର, ମୁଁ ବାହା ହେବା ପାଇଁ ରାଜି, ତମେ ସେ ଅସନା କଥାଗୁଡ଼ାକ କୁହନାହିଁ ।" ଚା'କପଟା ଥୋଇ ଦେଇ ସେ ଝଡ଼ପରି ବସିବା ଜାଗାରୁ ଉଠି ଚାଲିଗଲା ।

ଏଥର ବାହାଘର ପାଇଁ ରୀତିମତ ଆୟୋଜନ ଚାଲିଲା, କନ୍ୟା ଦେଖା ଠାରୁ ଆରମ୍ଭ କରି ବାହାଘର, ଭୋଜି ବନ୍ଧୁଚର୍ଚ୍ଚା ପର୍ଯ୍ୟନ୍ତ ଲୋଟଣୀ ପାରା ପରି ନାଚି ଡ଼େଇଁ ସବୁ ତୁଲଉ ଥିଲେ ଭାଉଜ । ପ୍ରଭଞ୍ଜନ କିନ୍ତୁ ଯନ୍ତ୍ର ମଣିଷଟିଏ ପାଲଟି ଯାଇଥିଲା । ଉତ୍ସାହ ନଥିଲା, ଉଦ୍ଦୀପନା ନଥିଲା ବରଂ ଭୟ ଆଶଙ୍କା ଓ ଉଦ୍‌ବେଗରେ ମୁହୂର୍ତ୍ତ ଗୁଡ଼ାକ ତାଙ୍କୁ କୋଟି କୋଟି ଯୁଗ ଭଳି ଲାଗୁଥିଲା । ସେ ଅପେକ୍ଷା କରିଥିଲା ଏମିତି ଏକ ମିଳନାତ୍ମକ ମୁହୂର୍ତ୍ତକୁ । ସମୁଦ୍ର ଭଳି ସ୍ନେହ ମମତା ବୁଝାମଣା ଢ଼େଉଗୁଡାକ ଫୁଲି ଉଠୁଥିବ ଆକାଶର ଛାତି ପର୍ଯ୍ୟନ୍ତ, ଆକାଶ ନଇଁ ଆସୁଥିବ,ବିସ୍ତରି ଯାଉଥିବ ସମୁଦ୍ରର ଛାତିରେ, ସବୁ ଏକାକାର ହେଇ ଯାଉଥିବ । ସମୁଦ୍ର ଆକାଶ ପୃଥିବୀ ସୂର୍ଯ୍ୟଚନ୍ଦ୍ର ଗ୍ରହ ନକ୍ଷତ୍ର, ସବୁଠି ଥିବ ଖାଲି ସ୍ନେହ ପ୍ରେମ ପ୍ରୀତିର ଅଖଣ୍ଡ ଜୁଆର ।

ସୁନନ୍ଦା ଠୁଁ ପ୍ରତିଶ୍ରୁତି ପାଇଲା ପରେ ଆଶ୍ୱସ୍ତ ହୋଇଥିଲା ପ୍ରଭଞ୍ଜନ । ଆଜି ପୁଣି କଙ୍କଣ ପ୍ରସଙ୍ଗରେ ସେ ସଂପୂର୍ଣ୍ଣ ନିଶ୍ଚିନ୍ତ ହୋଇପଡ଼ିଛି । ସେ ଚାହିଁଥିଲେ କଙ୍କଣ ଦୁଇଟା ନିଜ ବୋହୁ ପାଇଁ ରଖିପାରିଥାନ୍ତେ, ସେ ଦୁଇଟାରେ ସଂପୂର୍ଣ୍ଣ ଅଧିକାର ତାଙ୍କର । ସୁନନ୍ଦାକୁ ସେ ହଳକ ଦେଇ ସେ ଆଉଥରେ ସାବ୍ୟସ୍ତ କରିଦେଲେ ପ୍ରଭଞ୍ଜନ ତାଙ୍କର ଦିଅର ନୁହେଁ ବଡ଼ ପୁଅ, ସୁନନ୍ଦାକୁ ବଡ଼ ବୋହୂର ଅଧିକାର ସେ ଦେଇଛନ୍ତି । ତାର ଆଶଙ୍କା ଉଦ୍‌ବେଗ ହେତୁହୀନ ଥିଲା । ଏକଥା ଅନୁଭବକଲା ପରେ ନିଜ ଚିନ୍ତାର ସଂକୀର୍ଣ୍ଣତାରେ ସେ ଜଡ଼ସଡ଼ ହୋଇ ଯାଇଥିଲା ।

ସମୟ ଗଡ଼ି ଚାଲିଲା । ଦିନେ ଆବିଷ୍କାର କଲା ପ୍ରଭଞ୍ଜନ, ତା ଘର ଉପରେ ଆକାଶ ଛିଡ଼ି ପଡ଼ିଛି, ପବନ ଅଣଚାଶ ହୋଇ ବହୁଚି ତା ଘରେ । ସାତ ସମୁଦ୍ର ତେର

ନଈର ଜଳରାଶି ତା ଚଟାଣର ମାଟି ସବୁକୁ ବତୁରେଇ ଦେଇଛି । କୋଉ ମୁହୂର୍ତ୍ତରେ ସେ ରସାତଳଗାମୀ ହୋଇଯିବ ତାର ଠିକ୍ ଠିକଣା ନାହିଁ ।

ସୁନନ୍ଦା ପ୍ରତିଶ୍ରୁତି ରକ୍ଷା କରିଛି ।ଭାଉଜଙ୍କୁ ଶାଶୁଭଳି ଭକ୍ତି ଓ ସମ୍ମାନ ପ୍ରଦର୍ଶନରେ ଅବହେଳା କରି ନାହିଁ କେବେ । ସବୁ ଅସୁବିଧାକୁ ସହିନେଇଛି ସିନା ପଦଟିଏ ଅଭିଯୋଗ ସେ ତା ମୁହଁରେ ଶୁଣିନାହିଁ । ଅଥଚ ସର୍ବ ସହଣିକ ଦେବୀ ମୂର୍ତ୍ତି ଭାଉଜଙ୍କର କ'ଣ ହେଇଛି ? ତାଙ୍କର କଣ୍ଠସ୍ୱରରେ ଜଗତଯାକର ରୁକ୍ଷତା ସେ କେବେ କେମିତି କେଉଁଠୁ ସାଉଁଟି ଆଣିଲେ ? ଆଶ୍ଚର୍ଯ୍ୟ ହେଉଥିଲା ପ୍ରଭଞ୍ଜନ । ପାଟି ଖୋଲିଲେ ଅନ୍ୟକୁ ଗିଳି ପକାଇବାର ହିଂସ୍ରତା, ତାଙ୍କ ଓଠର କଇଁଫୁଲିଆ ହସ ଜାଗାରେ ଏବେ ତିରସ୍କାରର ଦାସ କେରାଣ୍ଟି କଣ୍ଟା । ଅପରକୁ ବିଦ୍ଧ କରିଦେବାର ବ୍ୟଗ୍ରତା, କ୍ଷତାକ୍ତ କରିବାର ଔଦ୍ଧତ୍ୟ, ଅହଂକାର । ସବୁଠାରୁ ଆଶ୍ଚର୍ଯ୍ୟ ଓ ବିସ୍ମିତ ହେଲା ପ୍ରଭଞ୍ଜନ, ଭାଉଜଙ୍କର ଏ ଆକସ୍ମିକ ପରିବର୍ତ୍ତନର ଶିକାର କେବଳ ସେ ଦୁହେଁ ନୁହଁନ୍ତି, ତାଙ୍କ ନିଜ ପୁଅ ନିରୀହ ମନୁ ପର୍ଯ୍ୟନ୍ତ ବି ଏହା ସଂକ୍ରମିତ ହୋଇଯାଇଛି । ଏମିତି କି ପୋଷା ବିଲେଇ କୁକୁର ଓ ସିଏ ବାପ ଘରୁ ଯୌତୁକରେ ଆଣିଥିବା ଓ ସର୍ବଦା ତାଙ୍କ ସ୍ନେହ ଆଦରର ଅଗ୍ରଭାଗ ଦାବୀ କରୁଥିବା ଗାଈ ବଉଳା ଓ ତା କଅଁଳା ପିଲାଟା ବି ଏଥିରୁ ବାଦ୍ ପଡ଼ି ନାହାନ୍ତି ।

ବଉଳାର ସେବା ସେ ନିଜେ କରନ୍ତି, ଯେତେ ଜଞ୍ଜାଳ ଭିତରେ ଥିଲେ ବି ବଉଳା ଆଗରେ ଘାସ କେରାଏ ନ ଦେଲେ, ପେଜ ତୋରାଣୀ ମୁନ୍ଦାଏ ନ ଦେଖେଇଲେ ତାଙ୍କୁ ଶାନ୍ତି ଲାଗେ ନାହିଁ ।

ସେଦିନ ଗଉଡ଼ ଆସିନଥିଲା, ବଉଳା ଆଗରେ କୁଳୁଚି ହାଣ୍ଡିଟା ଥୋଇ ଦେଇ ସେ ଭିତରକୁ ଗଲେ । କ୍ଷୀର ଦୁହିଁବା ପାଇଁ ଡେକ୍‌ଚିଟିଏ ଧରି ଆସି ଦେଖନ୍ତି ତ କୁଳୁଚି ହାଣ୍ଡିଟା ମୁହଁମାଡ଼ି ତଳେ ଗଡୁଛି । ତଳେ ବିଛାଡ଼ି ହୋଇ ପଡ଼ିଥିବା କୁଳୁଚି ତକ ଜିଭ ଲଗେଇ ଚାଟୁଛି ବଉଳା । ତାଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲା । ହଳିଆ ପାଞ୍ଚଣ ଖଣ୍ଡେ ଧରି ପାହାର ଉପରେ ପାହାର କଷିଦେଇଗଲେ ବଉଳାକୁ । ପିଠି, ପେଟ, ମୁହଁ ମୁଣ୍ଡ ଗୋଡ଼ ସବୁଠି । ତା ଦେହ ସାରା ନୋଳା ନୋଳା ଦାଗ, ଖୁଣ୍ଟ ଚାରିପଟେ ଘୂରି ଘୂରି ସେ ଯନ୍ତ୍ରଣାରେ ଗଁ ଗଁ ହେଉଥିଲା । ଶବ୍ଦଶୁଣି ପ୍ରଭଞ୍ଜନ ଘର ଭିତରୁ ଉଠି ଆସି ତାଙ୍କ ହାତରୁ ବାଡ଼ିଟା ଛଡ଼େଇ ପରିସ୍ଥିତି ଶାନ୍ତ କରିଥିଲା, ତଥାପି ଫଁ ଫଁ ହେଇ ସେ କହୁଥିଲେ-

"ଆରେ କ'ଣ କରି ମୋତେ ପାଇଛନ୍ତି ? ଢ଼େଙ୍କିକୁ କାଠ ମନେ କଲେଣି ? ମୁଁ ନିଆଶ୍ରୀ ହେଇଛି ? ଅନାଥ ହେଇଛି ? ଏମାନଙ୍କ ଦୟାର ଭିକାରୀ ମୁଁ? ଜାଣି ନାହାନ୍ତି ମୋ ପ୍ରତାପ ?"

ପ୍ରଭଞ୍ଜନ ଠିକ୍ ବୁଝିଥିଲା ବକ୍ତବ୍ୟର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ସୁନନ୍ଦା ଅସହାୟ ଦୃଷ୍ଟିରେ ପ୍ରଭଞ୍ଜନ ମୁହଁକୁ ଚାହିଁଲା । ପ୍ରଭଞ୍ଜନର କିଛି କହିବାର ନଥିଲା, ସେ ମୁହଁ ତଳକୁ କଲା ।

ସୁନନ୍ଦାର ମାନସିକ ଯନ୍ତ୍ରଣା ପ୍ରଭଞ୍ଜନକୁ ଅଛପା ନଥିଲା, ଏ ପରିସ୍ଥିତିର ମୁକାବିଲା କରିବା ପାଇଁ ସୁନନ୍ଦାର ଯେ ଯଥେଷ୍ଟ ସାମର୍ଥ୍ୟ ରହିଛି ସେ କଥା ବି ପ୍ରଭଞ୍ଜନ ଠିକ୍ ବୁଝିଥିଲା, ତଥାପି ସୁନନ୍ଦା କିଛି କହୁ ନଥିଲା । ବୋତଲରୁ ବାହାରିଥିବା ଜିନ୍‌ଟିଏ ଭଳି ସେ ପ୍ରଭଞ୍ଜନର ସବୁ ସର୍ତ୍ତ ନିଃସର୍ତ୍ତରେ ମାନିନେଇଥିଲା ।

ସମାଧାନର ସୂତ୍ର ଖୋଜି ପାଉନଥିଲା ପ୍ରଭଞ୍ଜନ, ଖୁନୀ ଆସାମୀକୁ ଫାଶୀ ଆଦେଶ ଦେବା ଭଳି ଦିନେ ଭାଉଜ କହିଲେ, ମୁଁ ଆଉ ପର ପାଇଁ ଘାଣ୍ଟି ହେଇ ମରି ପାରିବି ନାହିଁ । ମୋ ହାଣ୍ଡି ଚୁଲି ଅଲଗା କର । ମୁଁ ହାତରେ ଗଣ୍ଡାଏ ଫୁଟେଇ ଶାନ୍ତିରେ ରହିବି । ଅସହାୟ ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁ ପ୍ରଭଞ୍ଜନ କହିଲା ।

"ଏ କ'ଣ କହୁଛ ଭାଉଜ ? କାହାକୁ ତମେ କହୁଛ ପର ? ମନୁ ଆଉ ମୋତେ କେବେ ତମେ ଅଲଗା ଦୃଷ୍ଟିରେ ଦେଖିବାର ମନେ ପଡୁନାଇଁ ମୋର । ପିଲାଦିନୁ ମାଆକୁ ହରାଇବାର ଅଭାବ ତମେ କେବେ ମୋତେ ଅନୁଭବ କରିବାକୁ ଦେଇ ନାହଁ, ଏବେ ମୋତେ ପର କରିଦେଲେ ମୁଁ କ'ଣ ପର ହୋଇଯିବି ?"

"ହୁଁ-ମାଆ ! କିଏ କାହାର ମାଆ ! କିଏ କାହାର ପୁଅ ! ସମସ୍ତେ ଆପଣା ସାର୍ଥିକ । ସୁଖର ସାଥୀ, ଖାଲି ଲୋକ ଦେଖାଣିଆ ପଣ ମାଅ-ମାଆ-ମାଆ କହ ପୋଇଲି କି ଚାକରାଣୀ । କୋଉ ଜନ୍ମରେ କି ଧାରୁଆ ହୋଇଥିଲି ଯେ ଏବେ ସୁଝୁଛି ।" ଭାଉଜଙ୍କ ମୁହଁର ବିଦ୍ରୂପ ଓ ଆକ୍ଷେପରେ ଭରପୁର ଏ ଶବ୍ଦ ଗୁଡ଼ିକ ଅତ୍ୟନ୍ତ ଅଶ୍ଳୀଳ ଲାଗୁଥିଲା ପ୍ରଭଞ୍ଜନକୁ । ତା'ର ଆଉ କିଛି କହିବାର ନଥିଲା । ଏତେ ସୁନ୍ଦର ସ୍ୱଭାବର ମଣିଷଟାର କ'ଣ ଏମିତି ହୋଇଗଲା ? ପାଗଳୀ ହୋଇଗଲେ କି ଆଉ ?

ସୁନନ୍ଦାର ଧୈର୍ଯ୍ୟ ଚ୍ୟୁତି ଘଟୁଥିଲା । ଯଥେଷ୍ଟ ହେଇଗଲା ସେବା ଧର୍ମ, ଯଥେଷ୍ଟ ହେଇଗଲା ବୋହୂପଣ । ସତ୍ୟରକ୍ଷା । ଆଉ ନୁହେଁ । ସେ ଆଉ ଅଧିକ ଅପମାନିତ ହେବାକୁ ଚାହୁଁନଥିଲା । ପ୍ରଥମ କରି ସେ ଅଡ଼ିବସିଲା ପ୍ରଭଞ୍ଜନ ପାଖରେ । ବିଜ୍ଞ ପରାମର୍ଶଟିଏ ବି ଦେଲା, କହିଲା-ତମ ସ୍କୁଲରେ କ୍ୱାର୍ଟରସ୍ ଖାଲି ଅଛି, ଆମେ କିଛିଦିନ ପାଇଁ ସେଇଠିକି ଚାଲିଯିବା, ଅପାଙ୍କର ଟେନ୍‌ସନ୍ କମିଯିବ, ଘରଟା ଭିତରେ ସବୁବେଳେ ରବେଇ ଖବେଇ ହେବା କାନ୍ଥକୁ ବାଡ଼କୁ ଦେଖେଇ କହିବା ଦ୍ୱାରା ତାଙ୍କ ସ୍ୱଭାବ ନଷ୍ଟ ହେଉଛି । ସତକୁ ସତ ଯଦି ସେ ମାନସିକ ସନ୍ତୁଳନ ହରେଇ ବସିବେ, ସେତେବେଳେ ପୁଣି ନୂଆ ସମସ୍ୟା, ଆମେ କିଛିଦିନ ବାହାରେ ରହିଗଲେ ହୁଏତ ତାଙ୍କର ମାନସିକତାର କିଛି ପରିବର୍ତ୍ତନ ଆସିପାରେ ।

ସୁନନ୍ଦାର ପରାମର୍ଶ ଗ୍ରହଣ କଲା ପ୍ରଭଞ୍ଜନ । ତାପରଦିନ ଦୁଇଟି ସୁଟ୍‌କେଶରେ ଜିନିଷ ସଜାଡ଼ି ଦୁହେଁ ସ୍କୁଲ୍ କ୍ୱାର୍ଟରସ୍‌କୁ ଚାଲିଗଲେ, ବିଦାୟ କାଳୀନ ମୁହୂର୍ତ୍ତଟାବି ସେମିତି ବେଦନା ଦାୟକ ବୋଲି କେହି ଅନୁଭବ କଲେ ନାହିଁ ବାହାରେ । ସୁନନ୍ଦାର କିଛି

ପ୍ରତିକ୍ରିୟା ନଥିଲା, ନିଜ କୋଠରୀ ଭିତରକୁ ପଶିଯାଇ ଧଡ଼୍‌କରି କବାଟ ବନ୍ଦକରି ଦେଇଥିଲେ ଭାଉଜ ।

ଘରଠାରୁ କୋଡ଼ିଏ କିଲୋମିଟର ଦୂର ପ୍ରଭଞ୍ଜନର ସ୍କୁଲ । ସୁନନ୍ଦା ପ୍ରଭଞ୍ଜନ ଚାଲିଗଲେ । ଫେରି ଚାହିଁଲେ ନାହିଁ ପଛକୁ । ଭାଉଜଙ୍କର ସ୍ନେହ ପ୍ରେମ ପ୍ରୀତି ଏବଂ ନିନ୍ଦା ଗାଳି ଓ ତିରସ୍କାର ସେମାନଙ୍କର ସମ୍ବଳ । ଚଲାପଥର ପୁଞ୍ଜି । ସେଇ ମୂଳଧନ ନେଇ ସରକାରୀ କ୍ୱାର୍ଟରରେ ସେମାନେ ଆରମ୍ଭ କଲେ ନୂଆ ଜୀବନ । ନୂଆ ଘର କରଣା ।

ଏଣେ ଉଜୁଡ଼ି ଯାଉଥିଲା ଆଉ ଗୋଟିଏ ସଂସାର । ପ୍ରଭଞ୍ଜନ ସୁନନ୍ଦା ଘରଛାଡିଲା ପରେ ଭାଉଜ ଖିଆପିଆ ଛାଡ଼ିଦେଲେ, ଦିନ କେଇଟାରେ ଶୁଖି କଳା ଖପରା ହୋଇଗଲେ । ତାଙ୍କ ଶରୀରର ତେଜ ଶ୍ରୀହୀନ ହୋଇ ପଡ଼ିଲା । ସତେ ଯେମିତି କେଉଁ ପାପର ପ୍ରାୟଶ୍ଚିତ ସେ କରୁଛନ୍ତି । ଶରୀରର ପ୍ରତି ଅଂଶକୁ ତିଳତିଳ ଦଗ୍ଧକରି ସେ କଳଙ୍କ ଛଡ଼ଉଛନ୍ତି ଦେହରୁ ।

ଖବର ପାଇ ସୁନନ୍ଦା ପ୍ରଭଞ୍ଜନ ଆସିଲେ । ପ୍ରଭଞ୍ଜନ ଭାଉଜର ଗୋଡ଼ ଉପରେ ମୁଣ୍ଡ ଥୋଇ କହିଲା, ଏ କ'ଣ ହେଲା ଭାଉଜ ? ଏତେ ଶିରୀ ହେଲଣି, ଆମକୁ ଟିକେ ଖବର ଦେଲନି ?

ସେମିତି ଶୁଖିଲା ଘଡ଼ଘଡ଼ ଗଳାରେ ସେ କହିଲେ- "ଛୁଅଁନା ଛୁଅଁନା ମୋତେ, ମୁଁ ପାପୀ, ଅପରାଧିନୀ, ମୁଁ ଚଣ୍ଡାଳୁଣୀ ସପ୍ତନରକରେ ମତେ ଠାବ ନାହିଁ । ମୋତେ ପ୍ରାୟଶ୍ଚିତ କରିବାକୁ ଦିଅ ।" ଦୁଇ କୋଟର ଗତ ଚକ୍ଷୁରୁ ତାଙ୍କର ନିଗିଡ଼ି ପଡ଼ିଲା ଦୁଇ ଧାର ଲୁହ । ସୁନନ୍ଦା ତାଙ୍କ ନୁଖୁରା କେଶରେ ହାତ ବୁଲାଉ ବୁଲାଉ କହିଲା- "ଅପା ! ଏମିତି କାହିଁକି କହୁଛ ? ଭୁଲ ତ ଆମେ କରିଛୁ, ତମକୁ ଏମିତି ଏଠି ଛାଡ଼ି ଦେଇ ଆମେ ଅପରାଧ କରିଛୁ । ଆମକୁ ପଛେ କ୍ଷମା ନ ଦେଲେ ନ ଦିଅ । ତମେ ନିଜକୁ ଏମିତି ଅଭିସମ୍ପାତ ଦିଅନାହିଁ । ଆମ ଛାତି ଫାଟିଯାଉଛି ।"

ପ୍ରଭଞ୍ଜନ ପାଦ ପାଖରୁ ଉଠି ମୁଣ୍ଡ ପାଖକୁ ଗଲା । ପକେଟରୁ ରୁମାଲ ବାହର କରି ତାଙ୍କ ହାଡ଼ ସର୍ବସ୍ୱ ଶିଠୁଆ ମୁହଁକୁ ପୋଛି ଦେଲା- ତାଙ୍କ ମୁଣ୍ଡ ତଳୁ ତକିଆ ବାହାର କରି ନିଜ କୋଳ ଉପରେ ରଖିଲା । ସୁନନ୍ଦା ବସିଲା ପାଦ ପାଖରେ ।

ସେ ନିରାସକ୍ତ କଣ୍ଠରେ କହିଲେ-

"କ'ଣ ଟିକେ କହିଦେଲି ଯେ ତମେ ଦେଶାନ୍ତରୀ ହୋଇ ଚାଲିଗଲ ? ଏ ଘର ଦ୍ୱାର, ଜମିବାଡ଼ି, ଗାଈ ଗୋରୁ, ମନୁଆର ଭବିଷ୍ୟତ କାହାକୁ ସମର୍ପି ଦେଇ ମୁଁ ଯାଇଥାନ୍ତି ? ତମ ଭାଇ ଭଳି ତମେ ବି କ'ଣ ମତେ ପର କରିଦେଲ" ?

ଉଦ୍‌ଗତ କୋହକୁ ସମ୍ଭାଳୁ ସମ୍ଭାଳୁ ପ୍ରଭଞ୍ଜନ କହିଲା-

"ମୁଁ ପାପ କରିଛି ଭାଉଜ ! ଯାହା ଦଣ୍ଡ ଦବ ଦିଅ । ହେଲେ ସେମିତି କଥା କୁହ ନାହିଁ । ତମେ ଭଲ ହେବ । ତମ ସଂସାରକୁ ତମେ ସମ୍ଭାଳିବ । ମୋ କାନଧରି ତମେ ମୋତେ ବୁଦ୍ଧି ବାଟ ବତେଇଦବ । ଯେମିତି ପିଲାଦିନେ କରୁଥିଲ ।"

"ଏତେ ସପନକୁ ରାତି ନାହିଁରେ ।" ସେ ନିର୍ଲିପ୍ତ କଣ୍ଠରେ କହିଲେ ।

ସତକୁ ସତ ଆଉ ରାତି ନଥିଲା ସପନ ଦେଖିବା ପାଇଁ । ସେମିତି ଅଧା ସପନ ଦେଖି ଦେଖି ସିଏ ବାଟ କାଟିଲେ । ଡାକ୍ତର ବଇଦ କହିଲେ ଦେହରେ ରୋଗ ନାହିଁ, ମାନସିକ ରୋଗ । ସିଏ କିନ୍ତୁ ସମସ୍ତଙ୍କୁ ଫାଙ୍କିଦେଇ ମାସ ଦୁଇଟାରେ ଚାଲିଗଲେ ସେ ଅଫେରା ରାଇଜକୁ । ମନୁଆକୁ ଅନାଥ ହେବା ପାଇଁ ଦେଲେ ନାହିଁ, ପ୍ରଭଞ୍ଜନ ଓ ସୁନନ୍ଦା । କ୍ୱାର୍ଟର୍ସ ଛାଡ଼ି ଆସି ସେମାନେ ପୂର୍ବପରି ଗାଁରେ ରହିଲେ । ଏକଦା ପରିବାରର ମୂଳସୂତ୍ର ଭାଉଜଙ୍କର ନଥିବା ପଣ ଦେହସୁହା ହୋଇଗଲା । ମନୁଆ ପାଠ ପଢ଼ିଲା । ମାଆର ସ୍ମୃତିରେ ଧୀରେ ଧୀରେ ଅଳନ୍ଧୁ ଜମିଲା ।

ପୂର୍ବପରି ଆକାଶରେ ସୂର୍ଯ୍ୟ ଚନ୍ଦ୍ର ଯେମିତି ଉଦୟ ଅସ୍ତ ହେଉଥିଲେ ସେମିତି ଚାଲୁଥିଲା । ପୃଥିବୀଟା ଯେମିତି ସମୟ ସୁଅରେ ଗଡ଼ି ଚାଲୁଥିଲା ସେମିତି ଚାଲିଲା ତା ସାଙ୍ଗରେ କୋଟିକୋଟି କୀଟପତଙ୍ଗଠାରୁ ନଦ ନଦୀ ପାହାଡ଼ ପର୍ବତ ପର୍ଯ୍ୟନ୍ତ ସମସ୍ତେ ସମସ୍ତଙ୍କ ଲକ୍ଷ୍ୟପଥରେ ଅଣନିଃଶ୍ୱାସୀ ହୋଇ ଧାଉଁଥିଲେ କିନ୍ତୁ ବେଳେବେଳେ ପ୍ରଭଞ୍ଜନର ପୃଥିବୀଟା ମୁହୂର୍ତ୍ତକ ପାଇଁ କାଳର କରାଳ ସ୍ରୋତରେ ଅଟକି ଗଲା ଭଳି ଲାଗୁଥିଲା । ବହି ଯାଉଥିବା ପବନ, ଗଡ଼ିଯାଉଥିବା ଜଳ, ସମୁଦ୍ରର ଉତ୍ତାଳ ଢ଼େଉ, ଏମିତିକି ସୂର୍ଯ୍ୟ ଚନ୍ଦ୍ର ଗ୍ରହ ନକ୍ଷତ୍ରଙ୍କ ଗତିବି ମୁହୂର୍ତ୍ତକ ପାଇଁ ଅଟକିଯିବା ପରି ତାକୁ ଲାଗୁଥିଲା, ଯେତେବେଳେ ସେ ଭାଉଜଙ୍କର ବଞ୍ଚିଥିବା ବେଳର ମୁହୂର୍ତ୍ତ ମାନଙ୍କୁ ରୋମନ୍ଥନ କରୁଥିଲା । ସ୍ନେହ ପ୍ରେମ ସେବା ଓ ସଦିଚ୍ଛାର ଜୀବନ୍ତ ପ୍ରତିମାଟାର ହଠାତ୍ କାହିଁକି ଏମିତି ଘଟାନ୍ତର ହେଲା ? ତାର ଚିନ୍ତାଶକ୍ତି ଲୋପ ହୋଇଯାଉଥିଲା । ଏ ଅସିଦ୍ଧ ସିଦ୍ଧାନ୍ତକୁ ସେ ଆଦୌ ଗ୍ରହଣ କରିପାରୁନଥିଲା । ସେ ଜାଣିଥିଲା ଏତେ ବଡ଼ ଅସମାହିତ ପ୍ରଶ୍ନର ଉତ୍ତର ତାକୁ କେହି ଦେଇ ପାରିବେ ନାହିଁ, ସେ ବଞ୍ଚିଥିବା ପର୍ଯ୍ୟନ୍ତ । କେବାଣି ଦେଇଥିଲେ ଦେଇଥାନ୍ତେ ସେଇ ଭାଉଜ ନିଜେ । ସେଇଟା ବି ଆଉ ସମ୍ଭବ ନୁହେଁ ।

ଆଃ ଭାଉଜଟା ହେଲେ ବଞ୍ଚିଥାନ୍ତେ କି ଆଉ କିଛି ଦିନ !



# ବାସୁଦେବ

ବାସୁଦେବ ଯେଉଁଦିନ ରେବତୀକୁ ଲେଡ଼ିସ ହଷ୍ଟେଲରେ ଛାଡି ଆସିଲା, ତା ଛାତି ଭିତରଟା କେମିତି କେମିତି ହେଇଗଲା । ଏଇ ରେବତୀ ପାଇଁ ତାକୁ ଗାଁଟା ଭାରି ଭଲ ଲାଗୁଥିଲା । ପେଣ୍ଟା ପେଣ୍ଟା କୃଷ୍ଣଚୂଡ଼ା ସ୍ତବକ ଭିତରେ ନିଜକୁ ହଜେଇ ଦେବାର ଇଚ୍ଛା, ପଦ୍ମ ପୋଖରୀର କାଚକେନ୍ଦୁ ଜଳରାଶିରେ ବୁଡିବାର ମଜା, କୋଇଲିର କୁହୁତାନ ସହ ତାଳ ମିଳେଇ କୁହୁକୁହୁ କରିବାର ମାଦକତା ସଂଜବେଳେ ଠାକୁରାଣୀ ଘର ପାଖ ଫୁଲଭର୍ତ୍ତି ବଉଳ ଗଛରୁ ଭାସିଆସୁଥିବା ବାସ୍ନାରେ ସ୍ୱପ୍ନାଛନ୍ନ ହେବାର ମୋହ ସବୁଥିଲା ରେବତୀ ପାଇଁ । ରେବତୀ ଚାଲିଗଲାନି ଯେ ଗାଁଟାକୁ ଶ୍ରୀହୀନ କରିଦେଇ ଗଲା । ବାସୁକୁ ନିଜ ଘରଟା ବି ଖାଁ ଖାଁ ଲାଗିଲା । ଖରାଦିନିଆ ଖରାବେଳ ପରି । ପିଲାଦିନୁ ମା' ବାପାଙ୍କୁ ହରାଇଥିବା ବାସୁର ଅଧାଦିନ ଘରେ ଚୁଲି ଜଳେନି । ବାସୁଟାକୁ ଗାଁଟା ଯାକ ମିଣିପେ, ମାଇପେ, ପିଲାବୁଢ଼ା ସମସ୍ତେ ତାକୁ ଭଲପାନ୍ତି । ଏକୁଟିଆ ମଣିଷ, ଆଜି ଇଏ ଡାକିଲା ତ କାଲି ସିଏ, ଏମିତି କଟି ଯାଏ ତା ଦିନ । ପୂଜା ପାର୍ବଣରେ ତ ଭର୍ତ୍ତି ହୋଇଯାଏ ତା ଘର ପିଠାପଣାରେ । ଯୋଉ ଦିନ ତାକୁ ଟିକେ ଅସକତ ଲାଗିଲା ତ ସିଏ ରେବତୀ ଘରକୁ ଯାଇ ତାକୁ ଶୁଣେଇ ଶୁଣେଇ ଜେଜୀମା'କୁ କହେ-

ଜେଜୀମା ! " ଆଜି ତୋ ହାତରୁ ଖାଇବାକୁ ଇଚ୍ଛା ହଉଚିଲୋ ! ମୋ ପାଇଁ ଚାଉଳ ମୁଠେ ଫୁଟା ।"

ବୁଢ଼ୀ ମୁହଁ ମୋଡି କହେ- " ଆରେ ନିଅଂଶିଆ । ମୋର କୋଉଠି ବଳ ବୟସ ମାଡି ଆଉଚିରେ !ତତେ ଫୁଟେଇ ଦେବି ?" ରେବତୀ ଆଡକୁ ହାତଠାରି କହେ, ତୋରି ମାଇପକୁ କହ ତତେ ନ ତିଅଣ ଛଅ ଭଜା କରି ଖୁଆଇବ । ବୁଢ଼ୀ କଣ୍ଠଟାକୁ ଆଉ ଟିକେ ଉଠେଇ କହେ-

ଆଲୋ ରେବ !" "ଚାଉଳ ପକେଇଲୁଣି କିଲୋ ? ଏ ବାଳୁଙ୍ଗା ପାଇଁ ମୁଠାଏ ପକେଇ ଦେବୁ !"

ଭିତରୁ ଥାଇ ରେବତୀ ଜବାବ ଦିଏ- "ହଁ ଜେଜୀମା ! ମୁଁ କରିଦେଉଚି ।"

ସେ ଦିନ ରେବତୀ ଡାଲି ତରକାରୀ ସାଙ୍ଗକୁ ଭଜାଟିକେ, ଅବା ବଡିଚୁରା ନ ହେଲେ ଆଳୁବାଇଗଣ ଭର୍ତ୍ତାଟିକେ କରେ । ରେବତୀ ଘରକୁ ସେ ପର ଅପର ଭାବେ ନାହିଁ । ଘରପରି ଚଳେ । ଜେଜୀ ମା'ର ସ୍ନେହ ମମତା ଓ ରେବତୀ ପ୍ରତି ଅଜଣା, ଆକର୍ଷଣ ଏ ଦୁଇଟି ଥିଲା ବାସୁର ନିଃସଙ୍ଗ ଜୀବନର ପୁଞ୍ଜି । ନିଜକୁ କେବେ ଅସହାୟ ବା ଏକୁଟିଆ ଭାବି ନଥିବା ବାସୁକୁ ମନେ ହେଲା ଆଜି ଗାଁଟା ଯେମିତି ମଣିଷ ଶୂନ୍ୟ ହୋଇ ଯାଇଛି । ତା ଛାତି ଭିତରଟା କେମିତି କେମିତି ହେଇଗଲା । ମନଟାକୁ ଟିକେ ବୁଝେଇବା ପାଇଁ ସେ ରେବତୀ ଘରଆଡେ ଚାଲିଲା । ନ ଥାଉ ପଛେ ରେବତୀ, ବୁଢ଼ୀ ତ ଅଛି ।

ବାସୁଦେବକୁ ଦେଖୁ ନ ଦେଖୁଣୁ ଅଗଣାରେ ପାନକୁଟାରେ ପାନଛେଚୁ ଛେଚୁ ବୁଢ଼ୀ ସୁଁ ସୁଁ ହୋଇ କହିଲା- "ରେବୁଟା ଚାଲିଗଲା ଯେ ଘରେ ପଶି ହେଉନି । ପୋଡା ମୁହାଁଟାଁ ସବୁବେଳେ ନସରପସର ହେଉଥିଲା, ସେ ଗଲାବେଳୁ ଘରେ ମାଛି ମରିଯାଇଚି । ବୁଢ଼ୀ ଆଉଟିକେ ଆଗକୁ ମୁହଁ ଲମ୍ବେଇ କହିଲା ଆରେ ବାସୁ! ଝିଅଟାକୁ ଛାଡି ଆଇଲୁ ଯେ ସହର ବଜାର ଜାଗା ଚିରିଲା ଝିଅଟା, ତା ଖାଇବା ପିଇବା ଭଲ ମନ୍ଦ ସବୁ ବୁଝିଲୁ ଟି ? କିଛି ଅସୁବିଧା ହବନେଇଁ ତ ?"

ବାସୁ ଘରୁ ଭିତରୁ ଚଟଖଣ୍ଡେ ଆଣି ତା ଉପରେ ବସି ପଡୁପଡୁ କହିଲା- "କେତେ କେତେ ଝିଅ କାହିଁ କାହିଁ ଦୂରରୁ ଆସି ପାଠ ପଢୁଛନ୍ତି ଲୋ ଜେଜୀ ମା ! ଖାଲି ଝିଅମାନଙ୍କ କଲେଜ । ସେଠି ପୁଅପିଲା କେହି ପାଠ ପଢୁ ନାହାଁନ୍ତି । ହଷ୍ଟେଲରେ ବି ଖାଲି ଝିଅ, ତାଙ୍କ ପାଇଁ କେତେ ଜଗୁଆଳି, ରେବତୀର କିଛି ଅସୁବିଧା ନାହିଁ । ଦେଖିବୁ ସିଏ ହାକିମାଣୀ ହେଇ ଆସିବ ଏ ଗାଁକୁ ।"

ବୁଢୀ ମୁହଁ ମୋଡି କହିଲା- "ମଲା ଯାଉନୁ; ଯାହାକୁ ଆଶା ଭରସା କରିଥିଲି ସିଏ ତ ଫାଙ୍କିଦେଇ ଚାଲିଗଲା, ଏ ବୟସରେ ମତେ ନିଆଶ୍ରୀ କରିଦେଲା, ଏଇ ବକଟକୁ କି ଭରସା କରିବି ? ମୋର କୋଉ ବଳ ବୟସ ମାଡି ଆଉଚି ଯେ ସିଏ ହାକିମାଣି ହବ ମୁଁ ଦେଖିବି ?''

ବୁଢୀ ସିନା ବାହାରେ ଏମିତି କହିଦେଲା, ଭିତରେ ଭିତରେ ଉଲ୍ଲସି ଉଠିଲା, ରେବତୀ ହାକିମିଆଣୀ ହେବ । ପୁରୁଷ ପିଲାପରି ଗାଡି ମଟରରେ ବୁଲିବ । ଦେଶ ଦୁନିଆ ଦେଖିବ । ତା ଭଳି କର୍ମକୁ ଆଦରି ଏରୁଣ୍ଡି ଭିତରେ ସାରାଜୀବନ କଟେଇବ ନାହିଁ । ବାପା ମା ଛେଉଣ୍ଡ ଛୁଆଟାକୁ କେଡେ କଷ୍ଟରେ ସେ ମଣିଷ କରିଛି ଭଗବାନ ଜାଣନ୍ତି, ସିଏ ଦଶ ଜଣରେ ଜଣେ ହେଲେ ବୁଢୀର ହାତ ଯଶ ରହିବ ।

ଗାଁ ମାଟିର ପରିସୀମା ଡେଇଁ କେବେ ବାହାର ଦୁନିଆ ଦେଖି ନଥିବା ରେବତୀ ହଷ୍ଟେଲରେ ରହି ସହରର ବଡ଼ କଲେଜରେ ପାଠ ପଢିଲା, ଗାଁ ସ୍କୁଲରେ ପଢିଥିଲେ କ'ଣ ହେଲା ରେବତୀର ବୁଦ୍ଧି ଅକଲ ପାଠ ପଢା ପାଖରେ ସହରର କେତେ କେତେ ବଡ ଘରର ପିଲା ଫିକା ପଡିଗଲେ, ରେବତୀ ବୃତ୍ତି ପାଇଲା । କଲେଜରେ ଉତ୍ସବ ମାନଙ୍କରେ କେତେ ବଡ ବଡ ଲୋକଙ୍କଠାରୁ ପୁରସ୍କାର ପ୍ରୋତ୍ସାହନ ପାଇଲା । କମ୍ ଦିନ ଭିତରେ ସହରର କୋଣେ ଅନୁକୋଣେ ରେବତୀର ଜୟବାନା ଉଡିଲା । ରେବତୀ କ୍ଲାସ ପରେ କ୍ଲାସ ଉଠି ଚାଲିଲା । ସହରୀ ଆଦବ କାଇଦା ଶିଖିଲା । ଅଣ୍ଟା ପର୍ଯ୍ୟନ୍ତ ଲମ୍ବିଯାଇଥିବା କଳା ମୁଚୁମୁଚୁ କେଶରାଶି ଘୋଡା ଲାଞ୍ଜ ଭଳି ବେକ ତଳକୁ ଉଠିଗଲା । ମନ୍ଦାରଫୁଲ ମେଥି ପକାଇ ଜେଜୀମା ପଠାଇଥିବା ନଡିଆ ତେଲ ଜାଗା ନେଲା କିସମ କିସମ ସାମ୍ପୁ, କ୍ରିମ୍ ଆଉରି କେତେ କ'ଣ । ସେହି ଅନୁସାରେ ବେଶ ପୋଷାକ । ପାଦରେ ଏଡେ ଉଚ୍ଚର ଜୋତା । କଥା କହିବା ଭଙ୍ଗୀ ବି ବଦଳିଗଲା । ଦାନ୍ତ ଚିପି ଓଠ ବଙ୍କେଇ କେତେ ନୂଆ ନୂଆ ଠାଣି ।

ରେବତୀ ଖରା ଛୁଟିରେ ଆସେ ଗାଁକୁ । ଗାଁର ଅନ୍ୟ ଝିଅମାନଙ୍କ ଭିତରେ ସେ ବାରି ହେଇ ପଡେ । ଜେଜୀମା ହାତର ପଖାଳ ବଡିଚୁରା, ଶାଗ, ତାକୁ ରୁଚେ ନାହିଁ । ବୁଢ଼ୀକହେ, ଝିଅଟାସହର ବଜାରରେ ରହିଲାଣି ତା ନାଡିରେ କ'ଣ ଆଉ ଏ ପଖାଳ ମଖାଳ ଯିବ ? ଅଣ୍ଟାରୁ ଚାବି ବାହାର କରି ପେଟରା ଖୋଲେ, ବାସୁ ହାତକୁ ଟଙ୍କାଏ ଦିଟଙ୍କା ବଢେଇ ଦେଇ କହେ– ବାସୁ ତୁ ଫେରିଲା ବେଳକୁ ତା ପାଇଁ କ'ଣ ଦିଟା ଆଣିଦେବୁ ।

ବାସୁ ଗାଁ ପାଖ ହାଟରୁ ତା ପାଇଁ ଭଳିକି ଭଳି ସହରୀ ଜଳଖିଆ ଆଣେ ।

ବାସୁର ଗାଉଁଲି ବେଶଭୂଷା ରେବତୀକୁ ଆଦୌ ପସନ୍ଦ ଲାଗେନାହିଁ । ସେ ନାକ ଟେକି କହେ–

ମୁଣ୍ଡରେ ବୋଝେ ବୋଝେ ତେଲ କାହିଁକି ମାଖୁଛୁ ବାସୁଭାଇ ? ଛି–କି ଚୟସ ତୋର ! କ'ଣ ଦିଶୁଛି ଏ ସାର୍ଟର ରଙ୍ଗ ?

ସାଆନ୍ତ କୁଣିଆ ଭଳି ଏ ଗାମୁଛା ଖଣ୍ଡକ କାହିଁକି କାନ୍ଧରେ ଲମ୍ବେଇଛୁ କହିଲୁ !

ବାସୁ ନିର୍ବିକାର ହୋଇ କହେ– ଆମର ଏଇ ବେଶଭୂଷା ଭଲ ଲୋ ରେବ ସାଇବାଣୀ । ତୁ ସିନା ହାକିମାଣୀ ହେବୁ ଯେ ତୋ ପାଇଁ ବେଶ ଭୂଷା । ଆମେ ତ ମୂର୍ଖ ମଫସଲି ମୁଣ୍ଡ । ଆମର ଏଇ ଭଲ ।

ବାସୁକଥା ପସନ୍ଦ ହୁଏ ନାହିଁ ରେବତୀର । ସେ ଉଠି ଚାଲିଯାଏ । ରେବତୀର ବେଶଭୂଷା, ଭାବଭଙ୍ଗୀ, ଚାଲିଚଳନ ଦେଖି ବାସୁ କଳ୍ପନାର କୃଷ୍ଣଚୂଡା ଧିରେ ଧିରେ

ଫିକା ପଡିଯାଏ । ପଦ୍ମଫୁଲକୁ ପିଠିରେ ଧରିଥିବା କୁମ୍ଭୀର ଆହୁରି ଘୁଞ୍ଚି ଘୁଞ୍ଚି ଯାଏ ଅଥଳ ଜଳକୁ । ବାସୁ ପାଦେ ଆଗକୁ ବଢେ ପୁଣି ପାଦେ ପଛକୁ, ଭୟହୁଏ କାଳେ ସେ ଥଳକୂଳ ହରେଇ ଦବ । ସେ ପ୍ରକୃତିସ୍ଥ ହୁଏ । ମନରେ ଆଣ୍ଟ ବାନ୍ଧେ ରେବତୀ ତାର । ସଂପୂର୍ଣ୍ଣ ଭାବେ ତାର । ସେ ଯେମିତି ଯୋଉଠି ଯେଉଁ ବାଗରେ ଥାଉ ପଛେ, ରେବତୀକୁ ଅଧିକ ପାଠ ପଢେଇବା, ସାଇବାଣୀ କରିବା ନିଶା ତ ତାରି ମୁଣ୍ଡରେ ପ୍ରଥମେ ପଶିଥିଲା, ତା ଦେଇ ତ ପାଠ ଶାଠ ହେଲା ନାହିଁ । ରେବତୀଟାର ଭଲ ପାଠ ହଉଚି, ସିଏ ପଢୁ ।

ବାସୁ ଗାଁ ସ୍କୁଲରେ ଶିକ୍ଷକ ହେଲା । ରେବତୀ ଗଲା ବାଣୀ ବିହାର । ଜମିବାଡି ଭାଗ ବଖରାରୁ ଯାହା ଆସିଲା ବିକି ଭାଙ୍ଗି ବୁଢ଼ୀ ସବୁ ବାସୁ ହାତକୁ ବଢେଇ ଦିଏ ରେବତୀ ପାଇଁ, ଆଜିକାଲି ବଜାର ଭାଉ ଅମାଲୁମ୍ ନାହିଁ ବାସୁକୁ । ନିଜ ଦରମା ପଇସାରୁ କିଛି ମିଶେଇ ନିଜେ ଦେଇ ଆସେ ବାଣୀ ବିହାରରେ ।

ଆଜିକାଲି ରେବତୀ କହେ- ବାସୁଭାଇ ! ସ୍କୁଲ ମାରା କରି, ଏତେ ପଇସା ଖର୍ଚ୍ଚ କରି ବସ୍‌ରେ କାହିଁକି ଆସୁଛ ? ଡାକରେ ପଠେଇ ଦଉନା- କମ୍ ଖର୍ଚ୍ଚ ପଡନ୍ତା ।

ବାସୁ ମଫସଲି ଆଉ ବେଶି ପାଠ ପଢିନଥିଲେ କ'ଣ ହେଲା ରେବତୀର ମନକଥା ପଢିଦିଏ । ସିଏ ଆଉ ପ୍ରତିମାସରେ ଆସେ ନାହିଁ । କେବେ କେମିତି ଆସେ । ଡାକରେ ପଠେଇ ଦିଏ ଟଙ୍କା ।

ହଠାତ୍ ଦିନେ ବାଣୀବିହାର ପାଠସାରି ରେବତୀ ଫେରି ଆସିଲା ଗାଁକୁ । ସାଙ୍ଗରେ ତାର ଜଣେ ବାବୁରୀବାଳ ଦାଢି ରଖିଥିବା ଟୋକା, ସିଏ କୁଆଡେ ତାର ସହପାଠୀ । କାନ୍ଧରେ ଝୁଲୁଥିଲା ଝୁଲା ବ୍ୟାଗଟିଏ । ହାତରେ କ୍ୟାମେରା । ରେବତୀ ଓ ସେ ଟୋକାକୁ ନେଇ ବାସୁ ନଈପଠା, ଆମ୍ବତୋଟା, ପାହାଡ, ବଣ, ଗାଈଗୋଠ, ଗୋହିରୀ ପାଟ ବୁଲେଇଲା । ବନ୍‌ଶୀ କଣ୍ଟା ଧରି ସେମାନେ ମାଛ ଧରିଲେ । ରଙ୍ଗତୁଳୀରେ ବାସୁର ଛବି ତା କାନ୍‌ଭାସରେ ଧରି ରଖିଲା ସେ ଟୋକା । ଦୁଇ ତିନିଦିନ ଗାଁରେ ରହି ଦୁହେଁ ଫେରିଗଲେ । ବାସୁ ରହିଗଲା ପଛରେ ।

ରେବତୀ ସେଇ ଗଲା ଯେ ଗଲା, ଆଉ ଗାଁକୁ ଫେରି ଚାହିଁଲା ନାହିଁ, କୋଉ କଲେଜରେ ଅଧ୍ୟାପିକା ଚାକିରିଟିଏ ପାଇଲା । ଜେଜୀମା ପାଖକୁ ଚିଠିଖଣ୍ଡେ ପଠେଇଥିଲା । ମାସ ଶେଷରେ ଦରମା ପାଇ କିଛି ଟଙ୍କା ପଠାଇବାକୁ ବି ସେ ଭୁଲିନଥିଲା, ଜେଜୀମା ସେଇ ଟଙ୍କାରେ ଶିବମନ୍ଦିରରେ କୁସୁମା କରିଥିଲା । କାଇଁକି କେଜାଣି ବାସୁ ଆଦୌ ଖୁସି ହେଇ ପାରିଲାନି ସେଦିନ । ଅଦିନ ବର୍ଷା ଝଡ ଓ କୁହୁଡିରେ ତା ମନର ଆମ୍ବ ବଉଳ ସବୁ ଯେମିତି ଜଳିପୋଡି ଛାରଖାର ହୋଇଗଲା । ଦୁଇଦିନ ପର୍ଯ୍ୟନ୍ତ ଅଖିଆ ଅପିଆ ଘର

ଭିତରେ ରହିଲା । ତୃତୀୟଦିନ ଉଠିଲା ବେଳକୁ ଦିନ ଦୁଇଗଡ଼ି । ରେବତୀ ଘରଆଡେ ଘେରାଏ ବୁଲି ଆସିବାକୁ ବାହାରିଲା । ବାସୁକୁ ଦେଖି ଜେଜୀମା ପୋଷ୍ଟକାର୍ଡ ଖଣ୍ଡେ ତା ହାତକୁ ବଢେଇ ଦେଇ କହିଲା ପଢିଲୁ ବାସୁ । ରେବତୀ କ'ଣ ଲେଖିଛି ।

ନିରାସକ୍ତ ଭାବରେ ବାସୁ ପୋଷ୍ଟକାର୍ଡଟି ଉଠେଇ ନେଲା ଓ ବଡ ପାଟିରେ ଜେଜୀମାକୁ ପଢି ଶୁଣଉ ଶୁଣଉ ହଠାତ୍ ଅଟକିଗଲା ଏବଂ ପୋଷ୍ଟକାର୍ଡଟି ପିଣ୍ଡାରେ ଥୋଇ ଦେଇ ଧୀର ଗଳାରେ କହିଲା, ଜେଜୀମା ! ରେବତୀ ଗୋଟାଏ କମ୍ପ୍ୟୁଟର ଇଂଜିନିଅରକୁ ବାହାହୋଇ ଫରେନ୍ ପଳେଇଛି । ସମୟ କମ୍ ଥିବାରୁ ସେ ତୋତେ ଜଣାଇ ପାରିନି । ସେଥିପାଇଁ ଦୁଃଖ କରିଛି । ବୁଢ଼ୀ ଢ଼ୋ କରି ଏରୁଣ୍ଡିରେ ମୁଣ୍ଡ ପିଟି ଦେଇ କହିଲା- ଶେଷରେ ବାପ ଜେଜୀଙ୍କ ନାଁ ଗାଁ ବୁଡେଇଲା ଉଦଣ୍ଡୀଟା । ସେଇ ଶେଷ କଥା ପଟଦିଏ ଜେଜୀମାର ବାସୁ ଶୁଣିଥିଲା ଯାହା, ତା ପରଠୁଁ ସେ ମୁକ ପାଲଟି ଗଲା ଯେ କୋକେଇରେ ବନ୍ଧା ହେବା ପର୍ଯ୍ୟନ୍ତ ତା'ମୁହଁରୁ ପଦଟିଏ ଭାଷା ଆଉ କେହି ଶୁଣି ନାହାନ୍ତି ।

ବୁଢୀର ଭାରି ଇଚ୍ଛା ଥିଲା- ବାସୁ ହାତରେ ରେବତୀକୁ ଟେକି ଦେଇ ସେ ଶାନ୍ତିରେ ଆଖି ବୁଜିବ । ସାତ ପୁରୁଷର ଭିଟାମାଟି ଖଣ୍ଡିକ ଆବାଦୀ ହେବ । ଘର ଝିଅ ଘରେ ରହିବ । ଛେଉଣ୍ଡ ପିଲାଟା ଆଶ୍ରୟ ପାଇଯିବ । ରେବତୀ ପାଇଁ ବାସୁ ଆଖିରେ ଥିବା ସ୍ୱପ୍ନ ଭଲପାଇବାକୁ ସରାଗରେ ତୋଳି ନେଇ ଅଶୀ ବର୍ଷର ବୁଢ଼ୀ ବି କିଶୋରୀ ପ୍ରେମିକା ପାଲଟି ଯାଉଥିଲା, ଦୁଇ କଳ ଦେଇ ବୋହିଯାଉଥିବା ପାନ ଛେପ ପୋଛି ଆଖି ନଚେଇ ସେ ବାସୁର ଭଲ ପାଇବାକୁ ଆହୁରି ଗାଢ କରି କହୁଥିଲା-

ଆରେ ନାତି ଟୋକା ! ମାଇପକୁ ପାଠପଢଉଚୁ ଯେ ସିଏତ ବିଦେଶରେ ରହି ପଇସା ରୋଜଗାର କରିବ ରେ । ତତେ ଫୁଟେଇ ଦବ କିଏ ? ଏବେ ଠୁଁ ବୁଦ୍ଧି କରି ମୋତେ ବାହା ହେଇଯାଆ । ତୋ ଦେହ ପା' କଥା ବୁଝିବି । ନ'ତିଅଣ ଛ ଭଜା କରି ପରଷିବି । ବୁଢୀର ପାକୁଆ ପାଟିରେ ଲହଡି ଭାଙ୍ଗେ ହସର ଜୁଆର ।

ରେବତୀର ବାହାଘର ଖବର ପାଇ ବୁଢୀର ଛାତି ଫାଟିଗଲା । ଗୋଟାଏ ମୁହୂର୍ତ୍ତ ପାଇଁ ସେ ଅନୁଭବ କଲା ଯେମିତି ମହାକାଳର ସବୁତକ ଋତୁ ଏକ ସମୟରେ ଆସି ତା ଉପରେ କରାଳନୃତ୍ୟ କରିଚାଲି ଯାଉଛନ୍ତି, ତାକୁ ରାମ୍ପିବିଦାରି ବୁଢୀ ଆଉ ଅକର୍ମଣ୍ୟ କରି ଦେଇଛନ୍ତି ।

ସେଇ ଦିନଠୁଁ ସିଏ ଆଉ ରେବତୀ ନାଁ କେବେ ବି ଧରି ନାହିଁ ତୁଣ୍ଡରେ ।

ବୁଢୀ ରେବତୀ ଉପରୁ ସିନା ଭରସା ତୁଟେଇ ଦେଲା ହେଲେ ବାସୁ ଉପରେ ତାର ଆସ୍ଥା ଥିଲା, ପରପିଲାଟା ହେଲେ କ'ଣ ହେଲା, ବୁଢୀ ତାକୁ ନିଜଠୁ ଅଧିକ

କରିଥିଲା,ପଡନ୍ତ ବେଳକୁ ସେଇ ସାହା ଭରସା ହେବ । ତା କୋକେଇକୁ କାନ୍ଧ ଦେବ, ତାକୁ ପାଣିଭାତ ଟିକେ ଦେବ ।

ବୁଢୀ ମୁଣ୍ଡରେ ପୁଣି ଗୋଟାଏ ବଜ୍ର । ହଠାତ୍ ଦିନେ ବାସୁର ଫାଳିକିଆ କବାଟରେ ତାଲା ଝୁଲିବାର ଗାଁ ଲୋକେ ଦେଖିଲେ । କାହାକୁ କିଛି ନକହି ବାସୁ ଅନ୍ତର୍ଦ୍ଧାନ । ଗାଁ ଲୋକେ ତାର ଟେର ପାଇଲେନି । କିଏ କହିଲା ବାସୁ ରେବତୀକି ସଂଖୋଳିବାକୁ ଯାଇଛି ତ କେହି କହିଲା ସିଏ ସୁରାଟ କି ଆସାମ ଯାଇଛି । ଆଉ କେହି କେହି  କହିଲେ ରେବତୀ ବାହାହୋଇ ଗଲାପରେ ବାସୁ ମାନସିକ ଭାରସାମ୍ୟ ହରେଇ ସହରରେ ପାଗଳା ହେଇବୁଲୁଛି ଓ ଯାହାକୁ ଦେଖିଲେ ମୋ ରେବତୀ, ମୋ ରେବତୀ କହି କୁଣ୍ଢେଇ ପକାଉଛି । ଥାନା ବାଲା ତାକୁ ଥାନା ହାଜତରେ କିଛି ଦିନ ରଖିଲେ ତ ପୁଣି ଏବେ ରାଞ୍ଚି ପଠେଇ ଦେଇଛନ୍ତି ।

ବୁଢୀ ଶୁଣେ, କାହାରିକି କିଛି କହେ ନାହିଁ, କେବଳ ଜୁଳୁଜୁଳୁ କରି କହିବା ଲୋକର ମୁହଁକୁ ଚାହିଁ ରହେ । ସେକଥା ସବୁ ତାର ପରତେ ଯାଏ କି ନଯାଏ କେଜାଣି, ସିଏ କିନ୍ତୁ ଅପେକ୍ଷା କରି ରହିଥାଏ ବାସୁକୁ । ବାସୁ ଯେ ଦିନେ ନିଶ୍ଚୟ ଆସିବ ଏ ବିଶ୍ୱାସ ତୁଟେ ନାହିଁ ଜମା ତାର ।

ତା ବିଶ୍ୱାସର ବାଲିବନ୍ଧ ଭୁଷୁଡିବାକୁ ବାଧ୍ୟ ହେଲା ଯେଉଁଦିନ ଗାଁ ଚୌକିଆ ଗାଁରେ ଆସି ଖବର ଦେଲା-

ପୋଲିସର କୁମ୍ବିଂ ଅପରେସନ ବେଳେ ଧରାପଡିଥିବା ୪ ଜଣ ନକ୍ସଲ ପୋଲିସ ଗୁଳିରେ ପ୍ରାଣ ହରେଇଛନ୍ତି । ଆଉ ସେମାନଙ୍କ ଶବ ଭିତରେ ଅଛି ବାସୁର ଶବ । ତା ଶବ ଯଦି କେହି ନ ଆଣନ୍ତି ପୋଲିସ ବେଓ୍ୱାରିସ ଶବ ସାବ୍ୟସ୍ତ କରି ସତ୍କାର କରିବ ।

ବୁଢୀକୁ ଆଉ ମୁଣ୍ଡ ପିଟିବାକୁ ପଡିଲା ନାହିଁ । ଖବରଟା ଶୁଣୁ ଶୁଣୁ ଏମିତି ଆଁଟା ଫାଡି ରହିଗଲା ଯେ ତା ପାଟି ଆଉ ପଡିଲା ନାହିଁ କି ଆଖି ପତା ନଇଁଲା ନାହିଁ । ଯେଉଁ ନିଃଶ୍ୱାସଟା ସେ ଭିତରକୁ ନେଇଥିଲା ତାହା ଆଉ ଫେରିଲା ନାହିଁ, ଯଦିବା ତାହା ଫେରିଥାଏ ତେବେ ଆଖିବାଟେ ଅଥବା ପାଟିବାଟେ ।

କାରଣ ଏ ରାସ୍ତା ସବୁ ସେମିତି ଉନ୍ମୁକ୍ତ ହୋଇ ରହିଥିବାର ଦେଖାଯାଇଥିଲା କୋକେଇ ଉଠିବା ପର୍ଯ୍ୟନ୍ତ ।



# ତିନିମାଣିଆର ଇତିବୃତ୍ତ

ତିନିମାଣିଆର ଜମି ଘନଦାଦାଙ୍କର ଥିଲା ଜୀବନ । ତିନିମାଣିଆ ତାଙ୍କ ସଂସାରକୁ ଆଧାର ଦେଉଥିଲା ବୋଲି ନୁହେଁ କି କେନାଲ କୂଳିଆ ଅଉଲ ଜମି ତିନିମାଣର ମାଲିକ ଥିବାରୁ ଗାଁରେ ତାଙ୍କର ଗୋଟାଏ ସମ୍ଭ୍ରମ ସ୍ଥାନ ଅଛି ବୋଲି ନୁହେଁ । ଏ ଜମି ମୂଳରେ ତାଙ୍କ ଦାମ୍ପତ୍ୟ ଜୀବନର ଗୋଟାଏ ମଧୁର ସ୍ମୃତି ତାଙ୍କୁ ତିନିମାଣିଆ ପାଖରେ ସ୍ନିଗ୍ଧ କରିଦିଏ । ସେ ଏକ ଅପୂର୍ବ ପୁଲକ ଅନୁଭବ କରନ୍ତି ।

ଅନେକଦିନ ତଳର କଥା । ଘନଦାଦାଙ୍କ ବାହାଘର ସେତେବେଳକୁ ବରଷେ ପୂରି ନାହିଁ । ଚାକିରୀ ବି ପାଇଥାନ୍ତି ନୂଆ ନୂଆ । ନରି ପଧାନ ଆସି ତାଙ୍କୁ କହିଲା- 'ମୋ' ଝିଅ ବେଙ୍ଗୁଲିର ବାହାଘର ଠିକ୍ ହୋଇଗଲା ଘନିଆ । ହାତରେ ପଇସାଟିଏ ନାହିଁ, ଦୁଇ ତିନି ବରଷ ହେଲା ତ ବଢ଼ି ମରୁଡ଼ି ଦାଉ ସାଧୁଛି । ଝିଅଟା କ'ଣ ଅଭିଆଡ଼ି ରହିବ ? ଭାବୁଛି ତିନିମାଣିଆକୁ ବିକି ତାକୁ ଉଠେଇ ଦେବି ।'

ଆକାଶରୁ ଖସିପଡ଼ିଲା ଭଳି ଅନୁଭବ କଲେ ଘନଦାଦା । ନରି ପଧାନର ଚିନ୍ତିତ ମୁଖମଣ୍ଡଳ ଆଡ଼େ ଥରେ ନଜର ଫେରେଇ ଆଣି ସେ କହିଲେ-

'ତୋ' ମୁଣ୍ଡ ଖରାପ ହେଇଗଲା କିରେ ନରିଭାଇ ? ସୁନାଥାଳ ଜମି, ତୋ ଭାତହାଣ୍ଡି । ତୁ କହୁଛୁ ତାକୁ ବିକିଦେବୁ ?'

ନରି ପଧାନ ମୁହଁ ଶୁଖେଇ କହିଲା- 'ଆଉ କ'ଣ କରିବି କହ ? ପୁଅ ଥିଲେ ସିଏ ଭୋଗ କରିଥାନ୍ତା । ଠାକୁର ତ ପୁଅଟିଏ ଦେଲେନାହିଁ । ଏଇ ବକଟକ ଦେଇଛନ୍ତି । ସେଇ ମୋ' ପୁଅ, ସେଇ ମୋ' ଝିଅ । ଭଲ ପ୍ରସ୍ତାବଟିଏ ଜୁଟିଛି । ଦେଇ ନେଇ ତାକୁ ହାତକୁ ଦି' ହାତ କରିଦେଲେ ତା' ଚିନ୍ତା ମତେ ଆଉ ନଥିବ । ସେଇ ତିନିମାଣିଆଟି ମୋର ଆଣ୍ଠ । ତୁ ଯଦି ରଖିବୁ ରଖ । ଏ ଗାଁ'ରେ ତ ସବୁ ମୂଳିଆ ମୁଣ୍ଡ । କାହାର ସାଣୁ ଅଛି ଯେ କାହାକୁ କହିବି, କିଏ ରଖିବ ? ତୁ କ'ଣ ଭାବୁଛୁ ବିଚାର କର । ମୁଁ ଆଉଥରେ ଆସିବି ।'

ନରି ପଧାନ ଚାଲିଗଲା ପରେ ତା' ପ୍ରସ୍ତାବ ଉପରେ ଚିନ୍ତା କରିଥିଲେ ଘନଦାଦା । ପନ୍ଦରବର୍ଷ ହେଇଥିଲା ବାପା ଚାଲିଗଲେ । ପାଠପଢା ବନ୍ଦ ହେଲା । ଛୋଟିଆ ପ୍ରାଇମେରୀ ଶିକ୍ଷକ ଚାକିରୀଟିଏ କରି ସାନଭାଇ ଓ ଦୁଇଟି ଭଉଣୀର ଦାୟିତ୍ୱ ମୁଣ୍ଡେଇଛନ୍ତି । ଗାଁ'ର ମୁଲିଆମାନଙ୍କଠାରୁ କୋଉ ବଡ଼ ପଣରେ ଅଛି ଯେ ନରିଭାଇଟା ମୋ' ଉପରେ ଏମିତି ଭରସା ଦେଇ କହି ଚାଲିଗଲା । ସ୍ୱଗତୋକ୍ତି କରୁଥିଲେ ଘନଦାଦା ।

ମଖମଲି କପଡ଼ା ଖଣ୍ଡକରେ ନିଜର ସବୁତକ ଗହଣା ଧରି ହେମଖୁଡ଼ୀ ଘନଦାଦାଙ୍କ ହାତକୁ ବଢ଼େଇ ଦେଇ କହିଲେ- 'ତମେ ଭରସାଯୋଗ୍ୟ ନହୋଇଥିଲେ ଲୋକେ କାହିଁକି ତମକୁ ଭରସା କରୁଥାନ୍ତେ ?'

ଘନଦାଦା ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁଲେ । ହେମଖୁଡ଼ୀ କହିଲେ-

'ମୁଁ ସବୁ ଶୁଣିଛି । ତମେ ତାଙ୍କୁ ଜବାବ ଦିଅ । ଏସବୁ ମୋ' ବାପା ଦେଇଥିଲେ ମୋ' ପାଇଁ । ମୁଁ ମୋ' ଇଚ୍ଛାରେ ତମକୁ ଦେଉଛି । ତମେ ଏସବୁ ବିକି ତିନିମାଣିଆକୁ ରଖ ।'

କଥାଟା ଶୁଣୁ ଶୁଣୁ ଚିହିଁକି ଉଠିଥିଲେ ଘନଦାଦା । ଏସବୁ ତମେ କ'ଣ କହୁଛ ହେମ ? ସ୍ତ୍ରୀର ଗହଣା ବିକିବା ଏକଦମ୍ ଲକ୍ଷ୍ମୀଛଡ଼ା କାମ । ଏସବୁ ମୋ' ଦ୍ୱାରା ହୋଇପାରିବନି ।

ହେମ ଖୁଡ଼ୀ ଆଉଟିକେ ହସିଦେଇ ଦାର୍ଶନିକ ସୁଲଭ କଣ୍ଠରେ କହିଲେ-

'ଏସବୁ ବଦଳରେ ତ ତମେ ଲକ୍ଷ୍ମୀଙ୍କୁ ଆବାହନ କରି ଆଣିବ । ଲକ୍ଷ୍ମୀଛଡ଼ା କଥା କାହିଁକି ହେବ ? ଜମିଖଣ୍ଡକ ରଖିଦେଲେ ପରିବାର କେବଳ ତମରି ଦରମା ଗଣ୍ଡାକ ଉପରେ ନିର୍ଭର କରିବ ନାହିଁ । ଅନ୍ତତଃ ଚାଉଳ, ଡାଲି କିଣାରୁ ତ ମୁକ୍ତ ହୋଇଯିବୁ ଆମେ । ଛୁଆଗୁଡ଼ାକ ଏତେ ଛୋଟ । ତମେ କ'ଣ ତମରି ଦରମା ପଇସାରେ ସବୁ ଭରଣା କରିପାରିବ ? କାଲି ପୁଣି ଆମର ସଂସାର ବଢ଼ିବ ।' ଶେଷ ପଦକ କହିଦେଇ ହେମଖୁଡ଼ୀ ନିଜ କଥାରେ ନିଜେ ଲାଜେଇଗଲେ ।

ସେମିତି ଲାଜୁଆ ଲାଜୁଆ ହେଇ କହିଲେ-

'ମତେ ଯେତେବେଳେ ଏସବୁ ପିନ୍ଧିବାକୁ ଇଚ୍ଛା ହେବ ମୁଁ ନିଜେ ତମଠୁଁ ମାଗିନେବି ।'

ଘନଦାଦା ହେମଖୁଡ଼ୀ ମୁହଁକୁ ଚାହିଁଲେ । ଅଶିଣ ଆକାଶର ଚନ୍ଦ୍ର ପରି ସେ ମୁହଁଟା ଉତ୍‌ଫୁଲ୍ଲିତ ଦିଶୁଥିଲା । ସେ ସମ୍ମୋହିତ ହୋଇ ପଡ଼ିଥିଲେ । ବାହାଘରର ବର୍ଷଟିଏ ନପୁରୁଣୁ ଏ ପରିବାର ସହ ସେ କୋଉଦିନ କେମିତି ଏତେ ଏକାତ୍ମ ହୋଇପଡ଼ିଲେଣି ସେ ଖବର ରଖିନଥିଲେ ଘନଦାଦା ।

ହେମଖୁଡ଼ୀଙ୍କ ଆଗ୍ରହ, ଆବେଗ, ତ୍ୟାଗ ଓ ବଳିଦାନକୁ ଅସମ୍ମାନ କରିନଥିଲେ ଘନଦାଦା । ଭାବାବେଗରେ ତାଙ୍କୁ ନିଜ ଆଡ଼କୁ ଆଉଜାଇ ଆଣି କହିଥିଲେ-

'ତମକୁ ମାଗିବା ପାଇଁ ପଡ଼ିବ ନାହିଁ ହେମ ! ତମେ ମାଗିବା ଆଗରୁ ମୁଁ ସବୁ ଫେରେଇ ଦେବି ।'

ତିନିମାଣିଆରୁ ସୁନା ଫଳିଲା । ହେମଖୁଡ଼ୀଙ୍କ ସୁନା ଗହଣା କିନ୍ତୁ ଫେରେଇ ପାରିନଥିଲେ ଘନଦାଦା । ଦୁଇଭଉଣୀଙ୍କ ବାହାଘର, ସାନଭାଇ ବନଦାଦାଙ୍କ ପାଠପଢ଼ା ସରୁ ସରୁ ତାଙ୍କ ନିଜ ସଂସାର ତାଙ୍କୁ ବୁକେଇ ପଡ଼ିଥିଲା ।

ବନଦାଦା ନିଜ ଇଚ୍ଛାରେ ବାହାହୋଇଥିଲେ । ସହରୀ ଝିଅ ଗାଁ'ରେ ଚଳି ପାରିବନାହିଁ ବୋଲି ଅଷ୍ଟମଙ୍ଗଳା ବାସୀ ସ୍ତ୍ରୀକୁ ନେଇ ସେ ସହରକୁ ଚାଲିଗଲେ । କିରାଣୀ ଚାକିରୀଟିଏ ସେ କରନ୍ତି । ଘନଦାଦା ଭାବିଥିଲେ ଚାକିରୀ ପାଇଲାପରେ ବନ ତାଙ୍କ ବୋଝ ହାଲୁକା କରିବ । ଅନ୍ତତଃ ସହରରେ ଯେତେବେଳେ ରହୁଛି, ଛୁଆ ଦି' ଟାଙ୍କ ପାଠପଢ଼ା ଦାୟିତ୍ୱ ନେବ ।

କିନ୍ତୁ ସେତକବି ତାଙ୍କ ଦ୍ୱାରା ହେଲାନାହିଁ । ଛୋଟ କ୍ୱାଟର୍ସର ଆଳ ଦେଖାଇ ବନଦାଦାଙ୍କ ସ୍ତ୍ରୀ ସେ ଦାୟିତ୍ୱରୁ ମୁକ୍ତ ହୋଇଗଲେ ।

ଘନଦାଦାଙ୍କୁ କଷ୍ଟ ହୋଇଥିଲା । ଆଖି ଛଳଛଳ କରି ହେମଖୁଡ଼ୀ କହିଲେ- 'କ'ଣ ମୁଁ କରିନଥିଲି ବନୁଙ୍କୁ । ଏ ଘରେ ଗୋଡ଼ ଦେଉ ଦେଉ ପନ୍ଦର ବରଷରେ ମୁଁ ତିନିତିନିଟା ମାଆ ଛେଉଣ୍ଡ ଛୁଆଙ୍କର ମାଆ ହେଇଯାଇଥିଲି । ନିଜର ସବୁ ସୁଖ ସୁବିଧାକୁ ପାଶୋରି ଦେଇଥିଲି । ଦାଦା ଖୁଡ଼ୀ ଥାଉ ଥାଉ ସେହି ସହରରେ ମୋ' ଛୁଆ ହଷ୍ଟେଲ୍‌ରେ ରହି ପଢ଼ିବେ । ଲୋକେ କ'ଣ କହିବେ ? ଲୋକ ଲଜ୍ଜାଟିକେ ଲାଗୁନି ବନୁକୁ ?'

ଲୁଗା କାନିରେ ଆଖି ପୋଛୁଥିଲେ ହେମଖୁଡ଼ୀ । ଛାତିର ଯନ୍ତ୍ରଣାକୁ ଚାପି ରଖି ଆଶ୍ୱାସନା ଦେଇଥିଲେ ଘନଦାଦା ।

"ହଁ ମ ! ପାରାପେଟି ଘର । ପଢ଼ାଘର, ଡ୍ରଇଁରୁମ୍, ଷ୍ଟୋର୍‌ରୁମ୍ ସବୁ ସେଇଠି । ଫୁଲାଫାଙ୍କିଆରେ ବଢ଼ିଥିବା ଛୁଆଙ୍କର ପଢ଼ାପଢ଼ି ପାଇଁ ସେଠି ଆଦୌ ସୁବିଧା ହେବନି । ତମେ ବ୍ୟସ୍ତ ହଉଚ କାହିଁକି ? ବନୁ ଆମ ପିଲାଙ୍କ ଭଲ ପାଇଁ କହିଲା ନା ।"

ବନୁଦାଦାଙ୍କ ହାତଲେଖା ଚିଠିଖଣ୍ଡେ ପାଇଥିଲେ ଘନଦାଦା । ସହରରେ ସେ ଘରଖଣ୍ଡେ କିଣୁଛନ୍ତି ଯେ ତାଙ୍କଠାରୁ କିଛି ଆର୍ଥିକ ସାହାଯ୍ୟ ଚାହୁଁଛନ୍ତି ।

ଚିଠି ପଢ଼ିସାରି ଘନଦାଦା ହେମଖୁଡ଼ୀଙ୍କୁ ଡାକି କହିଥିଲେ- " ଦେଖ ହେ, ତମ ବନର ବୁଦ୍ଧି । ସେ ଘର କିଣିବ ଯେ ମୁଁ ତାକୁ ସାହାଯ୍ୟ କରିବି ।"

କଥାଟାକୁ ଯେତିକି ଲଘୁ ବୋଲି ଗ୍ରହଣ କରିଥିଲେ ଘନଦାଦା ତାହା ସେତିକି ଲଘୁ ନଥିଲା । ଏଇ ସାଧାରଣ ପ୍ରସଙ୍ଗଟି ଦୁଇଭାଇଙ୍କ ବୁନିଆଦୀ ସମ୍ପର୍କକୁ ଧୂଳିସାତ କରିବା ପାଇଁ ଯଥେଷ୍ଟ ସାମର୍ଥ୍ୟ ରଖିଥିଲା ।

ରଜ ଛୁଟି । ପିଲା ଦୁଇଜଣ ଘରେ ଥିଲେ । ବନୁଦାଦା ସ୍ତ୍ରୀ ପିଲାଙ୍କୁ ଧରି ପହଞ୍ଚିଥିଲେ ଗାଁରେ । ତଳେ ଗୋଡ଼ ଲାଗୁ ନଥିଲା ହେମଖୁଡ଼ୀ ଆଉ ଘନଦାଦାଙ୍କର । ବନୁଦାଦା ଓ ତାଙ୍କ ସ୍ତ୍ରୀ କିନ୍ତୁ ପୁରାପୁରି ଲାଗୁଥିଲେ ଗୁମ୍‌ସୁମ୍ । ଠିକ୍ ଯେମିତି ଗୋଟାଏ ଝଡ଼ ତୋଫାନର ପୂର୍ବ ମୁହୂର୍ତ୍ତ ।

ସେଦିନ ଥିଲା ଶେଷ ରଜ । ଅଗଣାରେ ସପଖଣ୍ଡେ ପଡ଼ିଛି । ତା'ରି ଉପରେ ଗରମ ଗରମ ମଣ୍ଡାପିଠା କେତେଟା ଘନଦାଦା ଓ ବନଦାଦାଙ୍କ ପାଇଁ ଥୋଇଦେଇ ହେମଖୁଡ଼ୀ ପାଣି ଦୁଇଗ୍ଲାସ ପାଇଁ ଭିତରକୁ ଯାଇଥାନ୍ତି । ଦୁଇଭାଇ ନିଃଶବ୍ଦରେ ଖାଉଥାନ୍ତି ନଡ଼ିଆ ପୁରଦିଆ ମଣ୍ଡା ।

ପ୍ରଥମେ ଘନଦାଦା ଆରମ୍ଭ କରିଥିଲେ କଥା । 'କି ଘର କଥା ଲେଖିଥିଲୁ କିରେ ? କେତେ ଟଙ୍କା ପଡ଼ିବ ?'

ତଳକୁ ମୁହଁ ପୋତି ମଣ୍ଡାପିଠାଟିଏ ପାଟିକୁ ନେଉ ନେଉ କହିଥିଲେ ବନୁଦାଦା " ତିନି ଚାରି ଲକ୍ଷ ଟଙ୍କା ହେବ । ମୁଁ ଜି.ପି.ଏଫ୍ ପାଇଁ ଦରଖାସ୍ତ କରିଛି । ଯାହା ଯେମିତି ଅଛି ସବୁ ମିଶି ଦୁଇଲକ୍ଷ ଅଢ଼େଇ ଲକ୍ଷ ପର୍ଯ୍ୟନ୍ତ ହେବ । ଆଉ ଲକ୍ଷେ ଦେଢ଼ଲକ୍ଷ ହେଲେ ଜାଗାଟା ତା' ପାଖରୁ କବଲା କରିଆଣନ୍ତେ ।"

ଘନଦାଦା କହିଲେ- ମୋ'ଜି.ପି.ଏଫ୍.ରୁ ଯାହା ଲୋନ୍ ଉଠେଇଥିଲି ସେଗୁଡ଼ାତ ଏପର୍ଯ୍ୟନ୍ତ ସୁଝା ସରିନି । ମୁଁ ଆଉ କୋଉଠୁ କି ସାହାଯ୍ୟ କରିବି ତତେ ?

ବନୁଦାଦା ଛେପ ଢ଼ୋକି କହିଲେ- 'ମୁଁ କ'ଣ କହୁଥିଲି କି ଭାଇ... । ମୁଁ କହୁଥିଲି... ।'

ବନୁଦାଦାଙ୍କ ତଣ୍ଟି ପାଖରେ କଥାଗୁଡ଼ା ଅଟକି ଯାଉଥିଲେ । ତାଙ୍କ ଗଳା ଶୁଖିଯାଉଥିଲା । ଦେହ ଝାଳେଇ ଯାଉଥିଲା ମୁଣ୍ଡ ଭିତରଟା ଝାଇଁ ଝାଇଁ କରି ଦେଉଥିଲା ।

ରୋଷେଇ ଘରେ ମଣ୍ଡାପିଠାରେ ପୁର ଭରୁଥିବା ସୁମିତ୍ରାଖୁଡ଼ୀ କାନେଇଥିଲେ ଦୁଇଭାଇଙ୍କ ଆଡ଼େ । ସେ ଦେଖିଲେ ତାଙ୍କର ସବୁ ଶୁଆପଢ଼ା, ପୂର୍ବ ଯୋଜନା ପଣ୍ଡ ହେଇଯାଉଛି । ଏଇଠି ଯଦି ସେ ମୁହଁ ନଖୋଲୁଛନ୍ତି ହାତରୁ ସବୁ ଗଲା ଜାଣ । ଏତେ ସୁନ୍ଦର ଘରଟା ହାତରୁ ଖସିଯିବ । ସେଇ ଜାଫ୍ରିଦିଆ କ୍ୱାଟର୍ସରେ ତାଙ୍କର କାଳକ କଟିବ । ତାଙ୍କୁ ହିଁ କିଛି କହିବାକୁ ପଡ଼ିବ । ସେ ଗୋଟାଏ ଖେପାରେ ରୋଷେଇଘର ଏରୁଣ୍ଡି ଟପି ଅଗଣାରେ ଠିଆହୋଇ କହିଲେ-

'କହୁନ, କୁହ । ମୁଁ କହୁଚି ଭାଇ । ତିନିମାଣିଆ ଜମିରୁ ଆମ ଭାଗଟା ଅଲଗା କରିଦେଲେ ଆମେ ସେଇଟା ବିକି ଅବଶିଷ୍ଟ ପଇସା ଭରଣା କରିଦିଅନ୍ତୁ ।'

ଘନଦାଦା ସ୍ତବ୍ଧ ହୋଇଗଲେ । ନିଜ କାନକୁ ସେ ବିଶ୍ୱାସ କରୁନଥିଲେ । କାଲି ସକାଳେ ଏ ଘରେ ପାଦ ଦେଇଥିବା ବୋହୂଟାର ବହପ କେତେ ! କେଡ଼େ ସହଜରେ ସେ କହୁଚି କଥାଗୁଡ଼ାକ । କ'ଣ ସେ ଜାଣିଛି ତିନିମାଣିଆର ମହତ୍ତ୍ୱ । ତା' ଉପରେ ତା'ର ଆଖି । ଗୋଟାଏ ଆଗ୍ନେୟଗିରି ଯେମିତି ଉଦ୍‌ଗୀରଣ ହୋଇଗଲା ତାଙ୍କ ଭିତରେ । ସେ ଖାଇବା ଥାଳି ଛାଡ଼ି ଠିଆହୋଇ ପଡ଼ିଲେ ଓ ବିସ୍ଫୋରଣଟିଏ କଲାଭଳି କହିଲେ- 'ଚୁପ୍‌କର ବୋହୂ! ଆଉ କେବେ ଯଦି ତମେ ଏ ଦୁର୍ବୁଦ୍ଧି କରିଛ ତା'ହେଲେ ମୋ'ଠୁଁ ଆଉ ତମେ ବଡ଼ ଚୋର ଚଣ୍ଡାଳ ପାଇବ ନାହିଁ । ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ସେ ତିନିମାଣିଆ ଜମିରେ କାହାରି ଅଧିକାର ନାହିଁ । ସେ ମୋର, ସମ୍ପୂର୍ଣ୍ଣଭାବରେ ମୋର । ଆଉ କେହି ତା' ଉପରେ ଇଞ୍ଚେ ବି ଅଧିକାର ସାବ୍ୟସ୍ତ କଲେ ମୁଁ କାହାରି ଇଜ୍ଜତ ରଖିବିନାହିଁ ।'

ବିନା ମେଘରେ ବଜ୍ରପାତ ଭଳି ଏମିତି ଗୋଟାଏ ଅଘଟଣ ପାଇଁ କେହି ପ୍ରସ୍ତୁତ ନଥିଲେ । ଜୀବନସାରା ଅନ୍ୟ ପାଇଁ ବଳିଦାନ କରିଥିବା ଘନଦାଦାଙ୍କ ମୁହଁରେ ଏ ସଂଳାପଗୁଡ଼ାକ କେମିତି ଅବାଗିଆ ବେସୁରା ଶୁଭୁଥିଲା । ତଥାପି ସେ ଗର୍ଜୁଥିଲେ । ସୁମିତ୍ରାଖୁଡ଼ୀ ସେତେବେଳକୁ ତାଙ୍କ ଶୋଇବାଘର ଭିତରକୁ ପଶିଯାଇ ତକିଆରେ ମୁହଁ ମାଡ଼ି କଇଁ କଇଁ ହେଉଥିଲେ । ମଣ୍ଡାପିଠାଟାକୁ ହାତରେ ଧରି ସେମିତି କାଠ ପାଲଟି ଯାଇଥିଲେ ବନୁଦାଦା । ହେମଖୁଡ଼ୀ ଖୁଣ୍ଟକୁ ଆଉଜି ସେମିତି ଠିଆ ହୋଇଥିଲେ । ଘନଦାଦା ସେମିତି ଗଳାଫଟେଇ କହୁଥିଲେ- 'ଆରେ, କ'ଣ କରି ମତେ ପାଇଛନ୍ତି ଏମାନେ ? ଢିଙ୍କିକି କାଠ ମନେ କଲେଣି ।'

ଦୁମୁଦୁମୁ ହୋଇ ସେ ଶୋଇବା ଘର ଭିତରକୁ ପଶିଗଲେ । ସେଦିନ ରାତିରେ ରୋଷେଇ ହୋଇନଥିଲା ଘରେ । ସମସ୍ତେ ଉପାସ । ପିଲାଗୁଡ଼ାକ ସେଇ ମଣ୍ଡାପିଠାରୁ ଗୋଟିଏ ଦୁଇଟା ଖାଇ ଶୋଇ ଯାଇଥିଲେ ।

ପରଦିନ ଭଲକରି ରାତି ନପାହୁଣୁ ବନୁଦାଦା ସୁମିତ୍ରା ଖୁଡ଼ୀ ଓ ତାଙ୍କ ଛୁଆମାନେ ଫେରି ଯାଇଥିଲେ ସହର । ହେମଖୁଡ଼ୀ ଓ ଘନଦାଦା ରହିଗଲେ ଗାଁ'ରେ । ଭାଙ୍ଗି ପଡ଼ିଥିଲେ ଘନଦାଦା । ସହଜେ ତ ସେ ଥିଲେ ଗମ୍ଭୀର ସ୍ୱଭାବର । ପୁଣି ସେଦିନର ଘଟଣା ପରଠାରୁ ସେ ଆହୁରି ଗମ୍ଭୀର ହୋଇପଡ଼ିଲେ । ହେମଖୁଡ଼ୀ ବି ତାଙ୍କୁ କିଛି କହିବାକୁ ସାହସ କରିନାହାନ୍ତି ।

ବନୁଦାଦା ସେଇଦିନଠୁଁ ଗଲେ ଯେ ଗଲେ ଦୀର୍ଘ ପାଞ୍ଚବର୍ଷ ବିତିଗଲା । ଗାଁ'କୁ ଆସିବାକୁ ମନ କରିନାହାନ୍ତି । ପୂଜା ପାର୍ବଣରେ ଘରକୁ ଆସିବା ପାଇଁ କାକୁତି ମିନତି

ହୋଇ ହେମଖୁଡ଼ୀ ସେମାନଙ୍କ ପାଖକୁ ଖବର ପଠାନ୍ତି । ଘନଦାଦାଙ୍କୁ ଲୁଚେଇ ଲୁଚେଇ ଚିଠି ଲେଖନ୍ତି । ଉତ୍ତର ଆସେ ନାହିଁ କି ସେମାନେ ଆସନ୍ତି ନାହିଁ । ମନ ବୁଝେନାହିଁ ହେମଖୁଡ଼ୀଙ୍କର । ପୁଅଝିଅ ହଷ୍ଟେଲ୍ ଗଲାବେଳେ ବନୁ ପାଇଁ ନଡ଼ିଆ ଦୁଇଟା, ମାଟିଆଳୁ ଖଣ୍ଡେ, ବଡ଼ି ଦୁଇପୁଞ୍ଜା, ସପୁରୀ ଦୁଇଟା ଅଲଗା ବାନ୍ଧି ପଠେଇ ଦିଅନ୍ତି । ଆଜିକାଲିକାର ଛୁଆ । ଖୁଡ଼ୀର ଉପରଠାଉରିଆ ବ୍ୟବହାରକୁ ପସନ୍ଦ କରନ୍ତି ନାହିଁ । ସମ୍ପର୍କର ସୂତାଖିଅ ଶିଥିଳ ହୋଇଆସେ । ସ୍ନେହ ମମତାର ଟାଣପଣକୁ ସ୍ୱାର୍ଥର ଘୁଣପୋକ କାଟିକୁଟି ଖିନ୍‌ଭିନ୍ କରିଦିଏ । ବିଶ୍ୱାସ ଓ ଭରସାର ବୃକ୍ଷ ଡାଳରେ ଈର୍ଷା, ଅସୂୟା ଓ ଘୃଣାର ଚଢେଇ ବସା ବାନ୍ଧନ୍ତି । ସମ୍ପର୍କର ବୁନିଆଦ୍ ଦୋହଲିଯାଏ । ଭୁଲ୍ ବୁଝାମଣାର ପ୍ରାଚୀର ଡେଇଁପାରେ ନାହିଁ ଆପଣାପଣ, ଆନ୍ତରିକତା, ଶ୍ରଦ୍ଧା ଆଉ ବିଶ୍ୱାସ ।

ଘନଦାଦାଙ୍କର ଝିଅ ବାହାଘର ହେଲା । ବାହାର କୁଣିଆ ଭଳି ଦାଦାଖୁଡ଼ୀ ଆସିଲେ । ଦିନେ ଓଳିଏ ରହି ଝିଅ ବିଦାପରେ ଚାଲିଗଲେ ।

ଘନଦାଦାଙ୍କୁ ଜୀବନଟା ଲାଗୁଥିଲା ଫିକାଫିକା । କଲେଇଛଡ଼ା, ମିଛ ମାୟା । ସମ୍ପର୍କ, ଆତ୍ମୀୟତା, କର୍ମ ବିକର୍ମ ଏସବୁ ଉପରୁ ତାଙ୍କର ଆସ୍ଥା ତୁଟିଯାଉଥିଲା । ଯେଉଁ ଉତ୍ସାହ ଓ କର୍ମପ୍ରେରଣାରେ ସେ ଜୀବନସାରା ସଂଘର୍ଷ କରି ଆସିଥିଲେ, ସେସବୁ ଯେମିତି ଥିଲା ତାଙ୍କର କୁହୁଡ଼ି ପହଁରା । ସଂସାର ଉପରେ ତାଙ୍କର ବିତୃଷ୍ଣା ଜମି ଆସୁଥିଲା । ସବୁ ସଫଳତା ସତ୍ତ୍ୱେ ବିଫଳତାର ବିନ୍ଦୁଟିଏ ତାଙ୍କ ପ୍ରାଣତନ୍ତ୍ରୀକୁ ଥରେଇ ଦେଉଥିଲା । ସେ ଯେତେଯେତେ ବୟସ୍କ ହେଉଥିଲେ, ବନୁଦାଦାଙ୍କ ସ୍ୱାର୍ଥପରତା ତାଙ୍କୁ ତତୋଧିକ ଯନ୍ତ୍ରଣା ଦେଉଥିଲା । ସେ ଅସ୍ଥିର ହୋଇ ପଡୁଥିଲେ ବେଳକୁ ବେଳ ।

ବ୍ୟସ୍ତ ହୋଇ ପଡୁଥିଲେ ହେମଖୁଡ଼ୀ । କ'ଣ ହୋଇଚି ଲୋକଟାର ? ଖିଆପିଆର ଠିକ ଠିକଣା ନାହିଁ । ଦେହ ପା'ର ଯତ୍ନ ନାହିଁ । ସଦାସର୍ବଦା ଶୂନ୍ୟକୁ ଚାହିଁ ରହୁଛନ୍ତି । କି ଅଜଣା ଦୁଃଖ ତାଙ୍କୁ ଖୋଳ କରିସାରିଲାଣି ଭିତରେ ଭିତରେ । ଏମିତି କେତେଦିନ ଚାଲିଥାନ୍ତା କେଜାଣି । ଦିନେ ଘନଦାଦା ଅନୁଭବ କଲେ ତାଙ୍କ ପୃଥିବୀରେ ନିଆଁ ଲାଗିଯାଇଛି । ପ୍ରଳୟ ମାଡ଼ିଆସୁଛି । ଯେମିତି ହେଲେ ତାଙ୍କୁ ଏ ପ୍ରଳୟବହ୍ନି ରୋକିବାକୁ ହେବ । ସେଥିପାଇଁ ସେ ସଂପୂର୍ଣ୍ଣ ନିଃସ୍ୱ ନିଶ୍ଚିହ୍ନ ହୋଇଗଲେ ବି ବିଚଳିତ ହେବାର କିଛି ନାହିଁ । ଏସବୁର ହେତୁ ଥିଲା ବନୁଦାଦାଙ୍କର ଏକ ହାତଲେଖା ଚିଠି ।

ଅନୁତପ୍ତ ବନୁଦାଦା ଘନଦାଦାଙ୍କୁ ତାଙ୍କ କୃତକର୍ମ ପାଇଁ କ୍ଷମା ମାଗି ଚିଠି ଲେଖିଥିଲେ । ଭଗବାନ ତାଙ୍କୁ ଯଥେଷ୍ଟ ଅନୁଭୋଗ ଦେଇ ସାରିଲେଣି । ପୁଅଟା ମଣିଷ ହେଲାନାହିଁ । ଯାହା ଯେଉଁଠି ପଇସାପତ୍ର ନେଇ ବିଜିନେସ୍‌ଟିଏ ଆରମ୍ଭ କଲା ଯେ

ସେଥିରେ ମୂଳ ବୁଡ଼ିଗଲା । ଝିଅଟାର ବୟସ ଗଡ଼ିଯାଉଛି ଯେ ତାକୁ ବାହା ଦେବାପାଇଁ ପାଖରେ ସମ୍ବଳ ନାହିଁ । ସବୁଠାରୁ ଯେଉଁ ଖବରଟା ବନଦାଦାଙ୍କୁ ଏମିତି ଅସ୍ଥିର କରି ଦେଇଛି ତାହା ହେଲା ତାଙ୍କ ଦେହରେ କ୍ୟାନସର୍ ରୋଗ ଜୀବାଣୁର ସନ୍ଧାନ । ଡାକ୍ତର ତାଙ୍କର ପ୍ରାଥମିକ ରିପୋର୍ଟ ଦେଇସାରିଛନ୍ତି । ୨/୩ଲକ୍ଷ ଟଙ୍କା ଖର୍ଚ୍ଚ ହେଲେ ରୋଗଟା ଭଲ ହୋଇଯିବାର ଯଥେଷ୍ଟ ସମ୍ଭାବନା ରହିଛି । କିନ୍ତୁ ସେତିକି ସମ୍ବଳ ତାଙ୍କ ପାଖରେ ନଥିବାରୁ ସେ ମୃତ୍ୟୁକୁହିଁ ପ୍ରତୀକ୍ଷା କରି ରହିଛନ୍ତି । ଅନ୍ତିମ ମୁହୂର୍ତ୍ତରେ ସେ କେବଳ ଥରଟିଏ ପାଇଁ ଭାଇଭାଉଜଙ୍କ ପାଦ ଛୁଇଁ କ୍ଷମା ମାଗିବାର କାମନା କରିଛନ୍ତି ।

ହେମଖୁଡ଼ୀ ଓ ଘନଦାଦାଙ୍କୁ ସକାଳୁ ସକାଳୁ ଦେଖି ସୁମିତ୍ରା ଖୁଡ଼ୀ ଭୋ ଭୋ ହୋଇ କାନ୍ଦି ଉଠିଲେ । ସେଇମିତି କାନ୍ଦିଲା କଣ୍ଠରେ କହିଲେ-

"ମୋରି କୃତକର୍ମର ଫଳ ସେ ଭୋଗୁଛନ୍ତି ଅପା ! ତମ କୋଳରୁ ତାଙ୍କୁ ଛଡ଼େଇ ଆଣିଥିଲି ଦଇବ ମୋ' କୋଳରୁ ତାଙ୍କୁ ଛଡ଼େଇ ନଉଛି ।"

ବାଁ ହାତରେ ହେମଖୁଡ଼ୀ ତାଙ୍କୁ ଠେଲିଦେଇ କହିଲେ- " ଚୁପ୍ କର କାଳତୁଣ୍ଡୀ ! କାହାକୁ କ'ଣ କହିଯାଉଛୁ ଚଣ୍ଡାଳୁଣୀ ? ମୋ' ବନୁର କିଛି ହବନି । ମୁଁ ତାକୁ ଯମ ପାଖରୁ ଛଡ଼େଇ ଆଣିବି । ହଁ ହଁ, ଦେଖିବୁ ମୁଁ ତାକୁ ଯମ ପାଖରୁ ଛଡ଼େଇ ଆଣିବି ।

ମୋ' ଛୁଆକୁ ମରଣ ମୁହଁକୁ ଠେଲିଦେଇ ମୁଁ ତିନିମାଣିଆକୁ ସମ୍ପାଦି ରଖିବି କାହାପାଇଁ ? ସେଇ ତିନିମାଣିଆକୁ ବିକି ଆମେ ଟଙ୍କା ଆଣିଛୁ । ବନୁ ଅପରେସନ୍ ହେବେ । ସେ ପୁଣି ନୂଆ ଜୀବନ ପାଇବେ ।"

ବନଦାଦା ଲୋଟି ପଡ଼ିଲେ ଘନଦାଦାଙ୍କ ପାଦତଳେ । ତାଙ୍କୁ ତଳୁ ଉଠେଇ ଛାତିରେ ଚାପିଧରି ଘନଦାଦା କହିଲେ- "ମୁଁ ଆସିଗଲିଣି । ଆଜିଠାରୁ ତୋର ସବୁ ଚିନ୍ତା ମୋ' ମୁଣ୍ଡରେ ଅଜାଡ଼ି ଦେ । ଭାବୁଛୁ କି ମୋ' ବୁଢ଼ା ହାଡ଼ରେ ବଳନାହିଁ ବୋଲି ? ଏଇ ଦଦରା ହାଡ଼ ଆଉ ଲୋଚା ମାଉଁସରେ ମୁଁ ତୋ' ପାଇଁ ସମୁଦ୍ର ଲଂଘିଯିବିରେ । ଆକାଶ ପାତାଳକୁ ଏକାକାର କରିଦେବି । ଭଗବାନଙ୍କ ପାଖରୁ ଭିକ ମାଗି ତୋ' ଆୟୁଷ ଫେରେଇ ଆଣିବିରେ । ଘନଦାଦାଙ୍କ ଆଖିରୁ ନିଗିଡ଼ି ପଡୁଥିବା ଧାର ଧାର ଲୁହ ଅମୃତ ହୋଇ ବର୍ଷି ଯାଉଥିଲା ବନୁଦାଦାଙ୍କ ବାମ କାନ୍ଧରେ ତ ବନୁଦାଦାଙ୍କ ଲୁହ ବର୍ଷି ଯାଉଥିଲା ଘନଦାଦାଙ୍କ ଡାହାଣ କାନ୍ଧରେ । ସେଇ ଲୁହର ବନ୍ୟାରେ ଦୁଇଭାଇଙ୍କ ଭିତରେ ଥିବା ଅପହଞ୍ଚ ବ୍ୟବଧାନ ସବୁ ବାଲିବନ୍ଧ ଭଳି ଭୁଷୁଡ଼ି ପଡୁଥିଲା ।



# ଭାଉଡ଼ି

ଡାକ୍ତରଖାନାରେ ସେଦିନ ଥିଲା ମୋର ପ୍ରଥମ ଦିନ । ଅନ୍ୟ ସହରରୁ ବଦଳି ହୋଇ ମୁଁ ଏଇ ଛୋଟିଆ ଡାକ୍ତରଖାନାଟିରେ ଯୋଗଦେଇଥିଲି । ପ୍ରଥମ ଦିନରେ ହିଁ ମୋର ସୁଲିଅପା ସହ ଦେଖା ସାକ୍ଷାତ । ହଁ ସେ ନିଶ୍ଚୟ ସୁଲିଅପା । ସୁଲିଅପା ବ୍ୟତୀତ ଅନ୍ୟକେହି ହୋଇନପାରେ । ଝିଅଟାକୁ ସୁଲିଅପା ଅର୍ଥାତ ସୁଲୋଚନା ଦଳବେହେରା ବୋଲି ଗ୍ରହଣ କରିବାକୁ ମୋ ଆତ୍ମପୁରୁଷ ମତେ ଏତେ ବାଧ୍ୟ କରିନଥାନ୍ତା, ଯଦି ତା ବାଁ ଓଠ ତଳକୁ ପାଚିଲା କଣ୍ଢେଇ କୋଳି ଆକୃତିର ଭାଉଡ଼ିଟି ସେ ମୋ ଆଖି ଆଢୁଆଳରେ ରଖିପାରିଥାଆନ୍ତା ।

କେମିତି ସେ ଲୁଚେଇ ଥାଆନ୍ତା ଯେ ? ସେ ତ ବସିଥିଲା ମୋ ଟେବୁଲ ସାମନାରେ ମୁହାଁମୁହିଁ ହୋଇ । ନାଁଟା ବଦଳେଇ ଦେଲେ ଯେ ଚେହେରାଟା ବଦଳି ଯିବ ଏମିତି ଗୋଟାଏ ଭ୍ରମ ଧାରଣା ଥିବା ପରି ବୋକୀ ଝିଅ ସେ ନୁହେଁ । ତଥାପି ସେ ମତେ ତା'ର ଭୁଲ ପରିଚୟ ଦେଇଥିଲା । ଶୁଣି ନଶୁଣିଲା ପରି ମୁଁ ତା ନାଁଟାକୁ ରେଜିଷ୍ଟରଭୁକ୍ତ ଦରଜ କରିବା ପାଇଁ ଦୁଇ ତିନିଥର ପଚାରିବା ସତ୍ତ୍ୱେ ସେ ସେମିତି ସୁଲୋଚନା ଦଳବେହେରା ପରିବର୍ତ୍ତେ ସୁଚିତ୍ରା ଗଡନାୟକ ବୋଲି ହିଁ କହିଥିଲା । ସାଙ୍ଗରେ ଆଣି ନଥିବା ତା ପାଞ୍ଚବର୍ଷର ପୁଅ ପାଇଁ କିଛି ଔଷଧ ନେଇ ସେ ଚାଲି ଯାଇଥିଲା ।

ସେ ଚାଲିଗଲା ପରେ ମୁଁ ବଡ଼ ଅଶ୍ୱସ୍ତି ଅନୁଭବ କଲି । ସେଇ ଆଖି । ସେଇ ନାକ । ସେଇ କଣ୍ଠସ୍ୱର । ଅବଶ୍ୟ ତା ଚେହେରାରେ ପନ୍ଦର ବର୍ଷତଳର ସେ ଔଜଲ୍ୟ ନଥିଲା । କିନ୍ତୁ ସେ ଯେ ଆମ ଗାଁ ସ୍କୁଲରୁ ପ୍ରଥମଶ୍ରେଣୀରେ ମାଟ୍ରିକ୍ ପାସ୍ କରିଥିବା ଓ ଗାଁରୁ ସହର ଆସି ହଷ୍ଟେଲରେ ରହି ପାଠ ପଢ଼ିବାପାଇଁ ସାହସ କରିଥିବା ପ୍ରଥମ ଝିଅ ସୁଲୋଚନା ବା ସୁଲିଅପା ନୁହେଁ ଏ କଥା ମାନିବାକୁ ମୁଁ ଆଦୌ ପ୍ରସ୍ତୁତ ନଥିଲି । ତା ଛଡା ସିଏ ମତେ ଚିହ୍ନିବନାହିଁ ଅଥବା ଚିହ୍ନା ଦେବନାହିଁ, ଏ କଥା ମୋ ସଚେତନ ମନ ଆଦୌ ଗ୍ରହଣ କରିପାରୁ ନଥିଲା । ମୁଁ ଅଶେଷ ଯନ୍ତ୍ରଣା ଅନୁଭବ କରୁଥିଲି ।

ସୁଲିଅପାଠୁ ମୁଁ ଦୁଇଟା କ୍ଲାସ ତଳେ ପଢୁଥିଲି । ସେ ଯେ କେବଳ ଭଲ ପଢୁଥିଲା ତା ନୁହେଁ, ସେ ସୁନ୍ଦର ଚିତ୍ର ଆଙ୍କୁଥିଲା, ଆଉ ଗୀତ ବି ଗାଉଥିଲା । ତା ବାପା

ଶୁକ ବଡବାପା କଲିକତା ଚଟକଳରେ କାମ କରୁଥିଲା ବେଳେ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । ସୁଲିଅପାଙ୍କୁ ତା ବୋଉ ବଡ କଷ୍ଟରେ କାମଦାମ କରି ମଣିଷ କରିଥିଲା । ମୋର ଅଧିକାଂଶ ସମୟ କଟୁଥିଲା ତାଙ୍କରି ଘରେ । ସ୍କୁଲ ପାଠସବୁ ମୁଁ ସୁଲିଅପା ପାଖରେ ବସି କରୁଥିଲି । ଖରା ଦିନିଆ ଖରାବେଳେ, ତାଙ୍କରି ବାଡି ପୋଖରୀରୁ ମେଞ୍ଚା ମେଞ୍ଚା ଚିକିଟା ମାଟିଆଣି ଆମ୍ବ, ପଣସ, ବାଇଗଣ, କଖାରୁଠାରୁ ଆରମ୍ଭ କରି ସରସ୍ୱତୀ ଓ ଗଣେଶମୂର୍ତ୍ତି ପର୍ଯ୍ୟନ୍ତ ଗଢୁଥିଲୁ । ଶ୍ରାବଣ ମାସର ଢୋ ଢୋ ବର୍ଷାରେ ତାଙ୍କରି ଦାଣ୍ଡଘରେ ପଦ୍ୟାନ୍ତ କରୁଥିଲୁ । ପକେଟ ସିନେମା ସଂଗୀତ ବହିରୁ ନାରୀ କଣ୍ଠର ଗୀତ ସୁଲିଅପା ଗାଉଥିଲା ବେଳେ ପୁରୁଷ କଣ୍ଠରେ ମତେ ଗାଇବାକୁ ସେ ବାଧ୍ୟ କରୁଥିଲା । ଗାଁ ଯାତ୍ରାରେ ଏଇ ଗୀତ ଗାଇ ପୁଅଝିଅ ନାଚ କରୁଥିଲେ । ସୁଲିଅପା ସାଙ୍ଗରେ ସେଇ ଗୀତ ଗାଇବାକୁ ମତେ ସଙ୍କୋଚ ଲାଗୁଥିଲା । କୌଣସି ନା କୌଣସି ଆଳ ଦେଖାଇ ମୁଁ ଖସିବାକୁ ଚେଷ୍ଟା କଲେ ଅଭିମାନ କରି ସେ କହୁଥିଲା-

"ମାଇଚିଆ !"

ସୁଲିଅପା ପାଖରେ ଆଉ ସବୁକଥାରେ ହାର ମାନୁଥିଲେ ବି, ସେଇ ପିଲା ବୟସରେ ବି ମୋ ପୌରୁଷ ପ୍ରତି ଆକ୍ଷେପ କରି କହିବାଟା ମତେ ବାଧୁଥିଲା । ଆଉ ବାଧ୍ୟ ହୋଇ ଶେଷରେ ମୁଁ ତା ସହ ସ୍ୱର ମିଳାଉଥିଲି ।

ସୁଲିଅପା ସ୍ୱଭାବରେ ଥିଲା ଗମ୍ଭୀର ପ୍ରକୃତିର । ତା ସହ ଆନ୍ତରିକତା ବଢାଇବାକୁ ଚେଷ୍ଟା କରି ତା କ୍ଲାସର ପୁଅ ପିଲାମାନେ ହତାଶ ହୁଅନ୍ତି । ତାକୁ ପ୍ରଭାବିତ କରିବାର ସକଳ କଳା କୌଶଳ ସୁଲିଅପାର ବ୍ୟକ୍ତିତ୍ୱ ପାଖରେ ଫିକା ପଡିଯାଏ । ସେଇଥି ପାଇଁ କି କ'ଣ, ସେମାନଙ୍କ ଚରିତ୍ର ପଞ୍ଜିକାରେ ସୁଲିଅପାର ନାଁ ଆଦୌ ଭଲ ନଥିଲା । ସେ ଗର୍ବୀ ଓ ଉଦ୍ଧତ । ତା ଓଠ ତଳର ଭାତୁଡିଟା କାଳେ ତାର ଆହୁରି ଖରାପ ଗୁଣର ହେତୁ । ଏଇମିତି ଭାତୁଡି ଥିବା ଝିଅ କୁଆଡେ ଚରିତ୍ରହୀନା, ଅସତୀ । ସୁଲିଅପାକୁ ନେଇ ଏ ପ୍ରକାର ଆଲୋଚନା ମତେ ଆଦୌ ଭଲ ଲାଗୁନଥିଲା । ପ୍ରତିବାଦ କଲେ ଆହୁରି ବିପଦ । ସେମାନଙ୍କ ପାଟିରେ ବାଡବତା ରହେ ନାହିଁ । ତେଣୁ ମୁଁ ଚୁପ ରହେ ।

ମୋର ଜଣେ ସଂପର୍କୀୟ କକା ହୋମିଓପ୍ୟାଥିକ୍ ଔଷଧ ଦିଅନ୍ତି । ସେଇ ଔଷଧରୁ ଦୁଇପାନ ଖାଇଦେଲେ ବିନା ଅପରେସନରେ ଭାତୁଡ଼ି ଗୁଡାକ ଖସି ପଡିବେ ବୋଲି ସେ କହୁଥିଲେ । ଜେଜେ ମା କହୁଥିଲା, ତା ନାକ ଅଗରେ କାଳେ ଗୋଟେ ଏତେଁ ବଡ ଭାତୁଡ଼ି ଥିଲା । ଘୋଡ଼ାବାଳ ବାନ୍ଧି ସେଟାକୁ ସେ ନିର୍ମୂଳ କରିଦେଲା । ଅନେକ ସମୟରେ ମୋର ଇଚ୍ଛା ହୁଏ, ଏ ସବୁ କଥା ମୁଁ ସୁଲିଅପାକୁ ବତେଇ ଦେବି । ବଦମାସ ପିଲାମାନଙ୍କର ତା

ଭାଡୁଡ଼ି ସଂପର୍କିତ ଆଲୋଚନା ବିଷୟରେ ମଧ୍ୟ ତାକୁ କହିଦେବି । କିନ୍ତୁ ସୌନ୍ଦର୍ଯ୍ୟ ତତ୍ତ୍ୱ ସଂପର୍କରେ ଅନଭିଜ୍ଞ ଥିଲେ ବି ସେଇ ଅପରିପକ୍ୱ ବୟସରେ ମତେ ସୁଲିଅପାର ସେ ଭାଡୁଡ଼ିଟା ବେଶ୍ ଚମତ୍କାର ଦିଶୁଥିଲା । ତା ଗୋରା ଧାରୁଆ ମୁହଁର ସବୁତକ ସୌନ୍ଦର୍ଯ୍ୟ ସତେ ଯେମିତି ସେଇ ଭାଡୁଡିରେ ଠୁଳ ହୋଇଥିଲା । ମତେ ଲାଗୁଥିଲା, ତା ଭାଡୁଡ଼ିହୀନ ମୁହଁଟା କଳଙ୍କହୀନ ଚନ୍ଦ୍ର ଭଳି ଏକଦମ ମାଦକତାହୀନ ଦେଖାଯିବ । ସେଥିପାଇଁ ତା ମୁହଁର ଭାଡୁଡ଼ିକୁ ନେଇ ମୁଁ ତାକୁ କେବେ ନିରୁତ୍ସାହିତ କରୁନଥିଲି । ବରଂ ତା ମୁହଁର ସୌନ୍ଦର୍ଯ୍ୟ ପାଇଁ ତା ଭାଡୁଡ଼ି ହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି ବୋଲି ମୁଁ କହୁଥିଲି । ମୋ କଥାରେ ସେ ବି ବେଶ୍ ମୁଗ୍ଧ ହୋଇଯାଉଥିଲା ।

ସୁଲିଅପା ମାଟ୍ରିକ୍ ପାସ୍ କରିଥିଲା ଗାଁରେ । ତା ମେଧା ଓ ବ୍ୟକ୍ତିତ୍ୱରେ ଈର୍ଷାନ୍ୱିତ ପୁଅପିଲାମାନେ ସହରକୁ ଗଲେ ଉଚ୍ଚଶିକ୍ଷା ପାଇଁ । କିନ୍ତୁ ଭଲ କଲେଜରେ ସିଟ୍ ପାଇବାର ସକଳ ଯୋଗ୍ୟତା ଥିବା ସତ୍ତ୍ୱେ ସୁଲିଅପା ପାଠପଢ଼ାରୁ ବଞ୍ଚିତ ହେଲା । ମୁଁ ଦେଖିଛି ସେଇ କେତେଦିନ ସୁଲିଅପାର ଯନ୍ତ୍ରଣା । ନିଜକୁ ମୁକୁଳିତ କରିବାର କାମନା ତାକୁ ଅସ୍ତବ୍ୟସ୍ତ କରୁଥିଲା । ଆଗକୁ ବଢ଼ିବାକୁ ସେ ଚେଷ୍ଟା କରୁଥିଲା । କିନ୍ତୁ ସେତେବେଳେ ଆମ ଗାଁରେ ସ୍ୱଚ୍ଛଳ ଘରର ଝିଅମାନେ ମଧ୍ୟ ସହରରେ ପାଠ ପଢ଼ିବାର ସୌଭାଗ୍ୟ ପାଇନଥିଲେ । ସୁଲିଅପା ତ ସହଜେ ଥିଲା ବାପ ଛେଉଣ୍ଡ ଓ ଗରିବ ।

ହଠାତ ଦିନେ ସହରରେ ରହୁଥିବା ସୁଲିଅପାର ଜଣେ ସଂପର୍କୀୟ ମାମୁ, ଗାଁରେ ପହଞ୍ଚି ତା ଭାଗ୍ୟ ପରିବର୍ତ୍ତନ କରିଦେବାର ପ୍ରତିଶ୍ରୁତି ଦେଲେ । ନିଜ ଅସ୍ତିତ୍ୱ ଜାହିର କରିବାକୁ ଅଣନିଃଶ୍ୱାସୀ ହୋଇପଡୁଥିବା ସୁଲିଅପା ଏଇ ପ୍ରତିଶ୍ରୁତିରେ ଗାଁ ଛାଡିଲା । କଲେଜ ହଷ୍ଟେଲରେ ରହି ସେ ପାଠ ପଢିଲା । ମାମୁ ଜଣକ ତାକୁ କେତୋଟି ଟିୟୁସନ ଯୋଗାଡ କରିଦେଇଥିଲେ । ଏଇଥିରୁ ସେ ନିଜର ପଢାଖର୍ଚ୍ଚ ଉଠାଉଥିଲା ।

ସୁଲିଅପାର ପ୍ରଶଂସାରେ ଗାଁ ମାଟି ମୁଖର ହୋଇପଡିଲା । ଆର୍ଥିକ ସମ୍ବଳ ନାଇଁ । ଅସହାୟା ମାଆର ଝିଅ ନିଜ ପାଇଁ ରୋଜଗାର କରି ହଷ୍ଟେଲରେ ରହି ପାଠ ପଢୁଛି । ଯାଠାରୁ ଗୌରବର କଥା ଆଉ କ'ଣ ଥାଇପାରେ । ବିଗିଡ଼ି ଯାଉଥିବା ବାଳୁଙ୍ଗା ପିଲାଙ୍କୁ ତାଙ୍କ ବାପ ମା ସୁଲିଅପାର ଉଦାହରଣ ଦେଉଥିଲେ । ଗାଁରେ ସୁଲିଅପାର ଜୟ ବାନା ଉଡୁଥିବା ବେଳେ ଏପଟେ ଘଟିଲା ଏକ ବଡ ଅଘଟଣ । ସେଇବର୍ଷ ସୁଲିଅପା କଲେଜରେ ଝିଅଙ୍କ ନିଖୋଜ ଓ ଆତ୍ମହତ୍ୟା ଘଟଣା ସାରା ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଆଉ ସେଇ ତାଲିକାରେ ଥିଲା ନିଜେ ସୁଲିଅପା । ସରକାର ବହୁ ତନାଘନା କଲେ । କିନ୍ତୁ କିଛି ଲାଭ ହେଲା ନାହିଁ । ସୁଲିଅପା ଖବର ଗାଁରେ ପହଞ୍ଚିବାକୁ ବେଶୀ ସମୟ ଲାଗିଲା ନାହିଁ ।

ସୁଲିଅପା ନିଖୋଜ ହେବାର ରହସ୍ୟ ଅଜଣା ହୋଇ ରହିଲା । ତା ପ୍ରତି ଅସହିଷ୍ଣୁ ଥିବା ଲୋକମାନେ ତା ଭାତୁଡ଼ିକୁ ଏଥିପାଇଁ ଦାୟୀ କଲେ । ସୁଲିଅପା ଯେ ଏମିତି କିଛି କରିବ, ସେଇ ଭାତୁଡ଼ି ହିଁ ତାହା ସୂଚାଇ ଦେଉଥିଲା ବୋଲି ସମସ୍ତେ କହିଲେ । ସେ କାଳେ କେଉଁ ଟୋକାର ବାଇକ୍ ପଛରେ ବସି ବୁଲୁଥିଲା । କେହି କେହି କହିଲେ, ସେ ତାଆରି ସାଙ୍ଗରେ ପଳେଇଛି । ଆଉ କେହି କହିଲେ, ସୁଲିଅପା କୁଆଡେ କୋଉ ଧନୀଘରର ଏକମାତ୍ର ପୁଅକୁ ଫସେଇ ବାହାହୋଇ ପଡିଛି । ଫଳରେ ପିଲାଟିକୁ ତା ବାପା ତେଜ୍ୟ କରିଛନ୍ତି । ବାଧ୍ୟ ହୋଇ ଦୁହେଁ ସହର ଛାଡ଼ି କୁଆଡେ ଚାଲିଯାଇଛନ୍ତି । କିନ୍ତୁ ବୟସ୍କ ଲୋକମାନେ ତା ମାଆକୁ ଦୋଷ ଦେଲେ । କହିଲେ, ବଢିଲା ଝିଅଟାର ଦାୟିତ୍ୱ ସଂପର୍କୀୟ ମାମୁ ହାତରେ ଛାଡିଦେବା ଉଚିତ ନଥିଲା । କିନ୍ତୁ ଲୋକଙ୍କ ଏ ନିନ୍ଦା ଅପବାଦ ଶୁଣିବା ପାଇଁ ସୁଲିଅପାର ମାଆ ଆଉ ନଥିଲା । ନିଖୋଜ ଖବର ପାଇବାର ଦିନ କେଇଟା ପରେ ସେ ଛାଡିଥିଲା ଇହଧାମ । ତେବେ ସୁଲିଅପା ନିଖୋଜ ଖବରଟା କିନ୍ତୁ ଅନେକ ଦିନ ଧରି ଗାଁରେ ଚର୍ଚ୍ଚାର ବିଷୟ ହୋଇ ରହିଥିଲା । ତା ପରେ ସବୁ ପୁଣି ସାଧାରଣ ହୋଇଯାଇଥିଲା ।

ଆଜି ପୁଣି ହଠାତ୍ ଭିନ୍ନ ରୂପରେ ସୁଲିଅପା । ପରିଚୟ ମଧ୍ୟ ବଦଳି ଯାଇଛି । ଶୈଶବର ସବୁ ସ୍ମୃତିକୁ ଗୋଟିଏ ମୁହୂର୍ତ୍ତରେ ଅସ୍ୱୀକାର କରି ସୁଲିଅପା ଚାଲିଗଲା । କ'ଣ ହୋଇପାରେ ଏ ଅଜ୍ଞାତବାସର ହେତୁ ? ସେ ଯେ ସୁଖରେ ନାହିଁ, ଏହା ତା ମୁଖମଣ୍ଡଳରୁ ବାରି ହେଉଥିଲା । କିନ୍ତୁ ସେ ବିବାହ କରିଛି ଓ ତାର ପିଲାଟିଏ ଅଛି ବୋଲି ଜାଣିବା ପରେ ମୁଁ ଟିକେ ଆଶ୍ୱସ୍ତ ହେଲି । ସେକ୍ସ ସ୍କାଣ୍ଡାଲରେ ଚର୍ଚ୍ଚିତ ଝିଅମାନଙ୍କ ପରି ସେ ଆତ୍ମହତ୍ୟା କରିନାହିଁ । ସେ ବଦନାମ ଗଳିର ମଣିଷ ହୋଇନାହିଁ । ସେ ମାଆ ହୋଇଛି । ତାର ପରିବାର ଅଛି । କିଛି ବିଶେଷ କାରଣରୁ ସେ ନିଜ ଲୋକଙ୍କ ଆଗରେ ନିଜର ପରିଚୟ ଦେଇପାରୁ ନାହିଁ । କିନ୍ତୁ ନିଜର ସଙ୍କୁଚିତ ପୃଥିବୀ ଭିତରେ ସେ ବଂଚିବାକୁ ଚାହୁଁଛି । ବଞ୍ଚିଛି ମଧ୍ୟ । ଆହାଃ । ବଞ୍ଚୁ ସୁଲିଅପା । ଯେଉଁ ବାଗରେ ହେଲେବି ସେ ବଞ୍ଚୁ ।

ମୋ ମନରେ ଅନେକ ପ୍ରଶ୍ନ । କିନ୍ତୁ ନିଜକୁ ସମ୍ବରଣ କରିନେଲି । ତା ପୃଥିବୀରେ ଦଖଲ କରିବାକୁ ମୁଁ ଚାହେଁନାହିଁ । ସୁଲିଅପା ବଞ୍ଚିଛି ସେଇଟା ମୋ ପାଇଁ ବଡ ଖବର ।

ଦୁଇ ଚାରିଦିନର କାମ ଭିତରେ ମୁଁ ସୁଲିଅପାକୁ ଧୀରେ ଧୀରେ ଭୁଲି ଆସୁଥିବା ବେଳେ ହଠାତ୍ ଦିନେ ମୋ କାର୍ ଆଗରେ ଛୋଟକାଟର ଦୁର୍ଘଟଣାଟିଏ ଘଟିଲା । ଟ୍ରିଛକିରେ ହଠାତ୍ ମୋ କାର୍ ଆଗକୁ ଏକ ସାଇକେଲରେ ପଶି ଆସିଲେ ଦୁଇଟି ବଗୁଲିଆ ପିଲା । ଏମାନଙ୍କୁ ଦୁର୍ଘଟଣାରୁ ବଂଚାଇବାକୁ ଯାଇ ମୁଁ କାରରେ ସଡନ ବ୍ରେକ୍ ମାରିଲି । ଫଳରେ ପଛରେ ଚାଲି ଚାଲି ଆସୁଥିବା ମହିଳା ଜଣକ ମୋ କାରରେ ବାଡେଇ ହୋଇ ଆଘାତପ୍ରାପ୍ତ

ହେଲେ । ଆଘାତ ଅଧିକ ନଥିଲେ ବି ନର୍ଭସ ହୋଇ ମହିଳା ଚେତା ହରାଇଥିଲେ । ଗାଡ଼ିରୁ ଓହ୍ଲାଇ ତର ତର ହୋଇ ତାଙ୍କ ପାଖକୁ ଦଉଡ଼ି ଯାଇ ଦେଖିଲି ସେ ସୁଲିଅପା । ଓଃ- ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ, ବିଧାତା ମତେ କେମିତି ନା କେମିତି ସୁଲିଅପା ସହ ଭେଟେଇ ଦେଉଛି । ତା ମୋ ଭିତରେ ଥିବା ପୂର୍ବ ସଂପର୍କକୁ ଭଗବାନ କେମିତି ଗୋଟେ ଯୋଡିବାକୁ ଚାହୁଁଛନ୍ତି । ଶୈଶବରୁ ଏବେ ଯାଏଁ ସବୁଠି । ମତେ ଲାଗିଲା ସେ ସବୁ ଅଦୃଶ୍ୟ ବିଧାତାର ଖେଳ ।

ମୋ ପାଖରେ ଫାଷ୍ଟଏଡ ବକ୍ସ ଥିଲା । ସେଇଠି ହିଁ ମୁଁ ସୁଲିଅପାର ପ୍ରାଥମିକ ଚିକିତ୍ସା କରି ତାକୁ ସୁସ୍ଥ କରିଦେଲି । ସେ ଉଠିଲା । ତାକୁ ଆଦୌ ଚିହ୍ନି ନଥିବା ପରି ମୁଁ ଛଳନା କରି କହିଲି-ଚାଲନ୍ତୁ ମାଡାମ୍, ମୁଁ ଆପଣଙ୍କୁ ଆପଣଙ୍କ ଘରେ ଛାଡିଦେଇ ଆସିବି ।

ସୁଲିଅପା ଅପ୍ରସ୍ତୁତ ହୋଇଗଲା । କହିଲା-

"ନାଇଁ ନାଇଁ...ଧନ୍ୟବାଦ, ଆପଣ ଯାଆନ୍ତୁ, ମୁଁ ଠିକ୍ ଅଛି । ମୁଁ ଚାଲି ଚାଲି ଘରକୁ ଚାଲିଯିବି ।"

ସେତେବେଳକୁ ଦୁର୍ଘଟଣା ସ୍ଥାନରେ କିଛି ଲୋକ ଜମି ଯାଇଥିଲେ । ସେମାନଙ୍କ ଭିତରୁ କେତେଜଣ କହିଲେ-ଏଇ ଆଗ ଗଳିରେ ତାଙ୍କ ଘର । ଆପଣ ତାଙ୍କୁ ଘରେ ଛାଡି ଦେଲେ ଭଲ ହେବ । ଅନ୍ୟ କେତେଜଣ କଥାଟିକୁ ସମର୍ଥନ କଲେ । ତେଣୁ ସୁଲିଅପା ବାଧ୍ୟ ହୋଇ କାର୍‌ରେ ବସିଲା ।

ଘଟଣା ସ୍ଥଳରୁ ମାତ୍ର ଅଳ୍ପ ଦୂରରେ ଥିଲା ସୁଲିଅପାର ଘର । ଗାଡିରୁ ଓହ୍ଲେଇ ତରତର ହୋଇ ପଳାଇ ଯାଉଥିଲା । ମୁଁ ଗାଡି ଷ୍ଟିଅରିଂ ଉପରେ ହାତ ରଖି ତାକୁ ଚାହିଁଲି । ଏକ ଅଜଣା ଆକର୍ଷଣରେ ବିମୋହିତ ହୋଇପଡିଲି । ଅନ୍ୟମନସ୍କତାରରେ ମୋ ପାଟିରୁ ବାହାରି ଆସିଲା-

"ମତେ ଘରକୁ ଡାକିବେ ନାହିଁ ?"

ସେ ବୁଲିପଡି ମୋ ମୁହଁକୁ ଚାହିଁଲା । ସେ ଯେ ମୋ ପାଖରେ ସଂପୂର୍ଣ୍ଣ ଧରା ପଡିଯାଇଛି, ଏ କଥା ତା ମୁହଁରୁ ବୁଝି ହେଉଥିଲା । ମୋ ପ୍ରଶ୍ନରେ ସେ ଆଉ ବାଟ ପାଇଲା ନାହିଁ । ବାଧ୍ୟ ହୋଇ କହିଲା-

"ହଁ ଆସନ୍ତୁ ।"

କୌତୁହଳୀ ମନ ନେଇ ମୁଁ ତା ପଛେ ପଛେ ଚାଲିଲି । ଦର ଆଉଜା କବାଟ ଠେଲି ସେ ଭିତରକୁ ଗଲା ଆଉ ମତେ ବସିବାକୁ ଇଙ୍ଗିତ ଦେଲା ।

କିଛି ରହସ୍ୟ ଉନ୍ମୋଚନର ଉନ୍ମାଦନାରେ ମୁଁ ଏରୁଣ୍ଡି ଡେଇଁ ଭିତରକୁ ଗଲି । ପାଞ୍ଚ ଛଅ ବର୍ଷର ପୁଅଟିଏ ଛବିବହି, ସ୍ଲେଟ ଓ ଖଡି ଧରି ବ୍ୟସ୍ତ । ଜଣେ ନୂଆ ଲୋକର ଆଗମନ ତାକୁ ବିଚଳିତ କଲାନାହିଁ । ସେ ମୁଣ୍ଡ ଟେକି ମୋ ଆଡକୁ ଚାହିଁଲା ଓ ପୁଣି ମାତିଗଲା ନିଜ ଦୁନିଆରେ ।

ସୁଲିଅପା କିଛି କହିବା ଆଗରୁ ମୁଁ ପ୍ଲାଷ୍ଟିକ ଚେୟାର ଖଣ୍ଡେ ଅକ୍ତିଆର କରି ସାରିଥିଲି । ଭିତରକୁ ଯାଇ କିଛି ସମୟ ପରେ ବାହାରି ଆସି ଆଉ ଏକ ପ୍ଲାଷ୍ଟିକ ଚେୟାର ଟାଣି ଆଣି ମୋ ଆଗରେ ବସୁ ବସୁ କହିଲା- ତୁ ତାହାହେଲେ ମତେ ଚିହ୍ନି ପାରିଛୁ...

ମୁଁ ନିର୍ଲିପ୍ତ ଅଥଚ ଦୃଢ କଣ୍ଠରେ କହିଲି- ଆଜି ନୁହେଁ, ସେଇ ପ୍ରଥମ ଦିନରୁ । ତୁ କେମିତି ଚିନ୍ତା କଲୁ ଯେ ମୁଁ ତତେ ଏମିତି ଭୁଲି ଯାଇ ପାରିବି ? ସୁଲିଅପାକୁ ଚିହ୍ନି ପାରିବିନି ? "ସାତ ଜନମ ପର୍ଯ୍ୟନ୍ତ ତୁ ଯେଉଁ ରୂପ ନେଲେବି ମୋର ତତେ ଚିହ୍ନିବାରେ କୌଣସି ସମସ୍ୟା ହେବନାହିଁ । ମୁଁ ଧୀରେ ଧୀରେ ଭାବପ୍ରବଣ ହୋଇପଡୁଥିଲି ।

ସୁଲିଅପା କହିଲା- "ସାତ ଜନମ କଥା କହନାଇଁ । ଏଇ ଜନମରେ ତ ମୁଁ ଭୋଗି ସାରିଲିଣି ସାତ ଜନ୍ମର ଯନ୍ତ୍ରଣା । ଭଗବାନଙ୍କୁ ଡାକୁଛି, ଏଇଟା ମୋର ଶେଷ ଜନମ ହେଉ ।"

ମୁଁ କୌତୁହଳୀ ହୋଇ ପଚାରିଲି-କିନ୍ତୁ ତୁ ଏମିତି ହଠାତ୍ ଅଜ୍ଞାତବାସରେ ରହିବାକୁ ନିଷ୍ପତ୍ତି ନେଲୁ କାହିଁକି ?

ସୁଲିଅପା ଗମ୍ଭୀର ଦିଶିଲା । କହିଲା-ଇଛାରେ ନୁହେଁ, ଦୁର୍ବୃତ୍ତଗୁଡାକ ମତେ ଗୋଟିଏ ଘରେ ବନ୍ଦ କରି ରଖିଥିଲେ । ନିଶା ଔଷଧ ଦେଇ ସେମାନେ ମୋ ସାରା ଶରୀରଟାକୁ ସ୍ଥାଣୁ କରିଦେଇଥିଲେ । ମୋ ଶରୀରକୁ ପଳ ପଳ କରି ଖାଉଥିଲେ । ଯେଉଁଦିନ ଟିକେ ସୁସ୍ଥ ଅନୁଭବ କଲି, ମତେ କୁହାଗଲା ମୁଁ ଅଛି ଝାନ୍‌ସୀ ସହରରେ । ବିପତ୍ନୀକ ବୃଦ୍ଧ ବ୍ୟବସାୟୀ ଜଣଙ୍କୁ ମୋର ସ୍ୱାମୀ ବୋଲି ଚିହ୍ନାଇ ଦିଆଗଲା । କୋଡିଏ ହଜାର ଟଙ୍କା ଦେଇ ସେ ମତେ କିଣିଥିଲା । ତାର ଦରକାର ଥିଲା ତା ପିଲାଙ୍କ ପାଇଁ ଗୋଟେ ଚାକରାଣୀ ଓ ଦେହ ପାଇଁ ଗୋଟେ ଦେହ । ସବୁକିଛି ସେ ମୋ'ଠାରୁ କଡାଗଣ୍ଡା କରି ଆଦାୟ କରି ନେଉଥିଲା । ସବୁ ସ୍ୱପ୍ନ ମୋର ମରି ସାରିଥିଲେ । କେବଳ ଜୀବନ ଥିଲା ବୋଲି ଜୀଇଁ ରହିବା ଛଡ଼ା ମୋର ଅନ୍ୟ ଉପାୟ ନଥିଲା ।

-ତୋ ନିଖୋଜ ହେବା ଖବର ପାଇବା ପରେ ସେପଟେ ତୋ ବୋଉର ଦେହାନ୍ତ ହେଲା ।

-ସେ ଖବର ବି ସେ ଅପହର୍ତ୍ତାମାନେ ମତେ ଦେଇଥିଲେ । କିନ୍ତୁ କିଛି ଚାରା ନଥିଲା । ଆଉ ଝାନ୍‌ସୀ ଆସିବା ପରେ ମତେ ଯେମିତି ଲାଗୁଥିଲା ସବୁଦିଗରେ ଅନ୍ଧାର ଘୋଟିଯାଇଛି । ମୁକ୍ତି ପାଇଁ ମୋ ପାଖରେ କିଛି ଉପାୟ ନାହିଁ ।

- ତେବେ ଏ ସହରକୁ ପୁଣି କେମିତି ଆସିଲୁ ?

- ଭଗବାନ ବୋଧେ ମୋର ଏତେ ଦୁଃଖ ସହିଲେ ନାହିଁ । ହଠାତ୍ ଦିନେ ମୁଁ ଆବିଷ୍କାର କଲି ଯେ ମୁଁ ମାଆ ହେବାକୁ ଯାଉଛି । ଏ କଥା ଜାଣିବା ପରେ ସେଦିନର ସେହି ପୁତିଗନ୍ଧମୟ ଜୀବନ ବି ହଠାତ୍ ମତେ ସୁନ୍ଦର ଓ ସମ୍ଭାବନାମୟ ଲାଗିଲା । ଅଯାଚିତ ଭାବେ ମୋ ସ୍ୱାମୀ ପାଲଟିଥିବା ଲୋକଟି ବି ମୋର ବେଶ୍ ସେବାଯତ୍ନ କଲା । ବାପା ହେବାର ସ୍ୱାଭିମାନରେ ସେ ଫୁଲି ପଡୁଥିଲା । ଡାକ୍ତରୀ ପରୀକ୍ଷାଠାରୁ ଆରମ୍ଭ କରି ସବୁ ପ୍ରକାର ସୁବିଧା ସେ ମତେ କରି ଦେଉଥିଲ । ଧୀରେ ଧୀରେ ମୋ ପ୍ରତି ତା ବିଶ୍ୱାସ ମଧ୍ୟ ଦୃଢୀଭୂତ ହେଲା । ଏହାପରେ ମୁଁ ମୋର ସବୁ ଦୁର୍ଦ୍ଦଶାକୁ ଭୁଲିବାରେ ଲାଗିଥିଲି । ମୋ ଭିତରେ ଗୋଟେ ରୂପାନ୍ତର ଘଟୁଥିଲା । କିନ୍ତୁ ଏଇ ସମୟରେ ପୁଣି ଏକ ଚଡକ ପଡିଲା ମୋ ଉପରେ । ଡାକ୍ତରୀ ପରୀକ୍ଷାରୁ ଜଣାପଡିଲା ଯେ ମୋ ରକ୍ତରେ ରହିଛି ଏଚ୍‌ଆଇଭି ପଜିଟିଭ୍ । ଅଭିଯୁକ୍ତକୁ ବିଚାରପତି ଫାଶୀଦଣ୍ଡ ଶୁଣାଇବା ପରି ଡାକ୍ତର ଗର୍ଭପାତ କରିବାର ପରାମର୍ଶ ଦେଇ ଚାଲିଗଲେ । କିନ୍ତୁ ମାଆ ହେବାର କାମନା ମତେ ଅନ୍ଧ କରିଦେଇଥିଲା । ମୋ ନିଜ ଜୀବନ ବିପଦରେ ପଡିଛି । ତଥାପି ପେଟରେ ଥିବା ପିଲାଟା ପ୍ରତି ମୋର ମମତା ବଢି ଯାଇଥିଲା । ଭାବିଲି, ମୃତ୍ୟୁ ଯଦି ଅବଶ୍ୟମ୍ଭାବୀ ତେବେ ପିଲାଟି ଦୁନିଆର ଆଲୋକ ଦେଖୁ । ମତେ ମଧ୍ୟ ମା ହେବାର ଗୌରବ ମିଳୁ । ସେଇଦିନ ରାତିରେ ହିଁ ମୁଁ ଦୃଢ ନିଷ୍ପତ୍ତି ନେଲି, ପିଲାଟିକୁ ଯେମିତି ହେଲେ ଜନ୍ମ ଦେବି । ସ୍ୱାମୀ ବ୍ୟବସାୟ କାମରେ ବାହାରକୁ ଯାଇଥିବା ବେଳେ ତା ଟ୍ରେଜେରୀରୁ କିଛି ଦିନ ଚଳିଲା ଭଳି କିଛି ଟଙ୍କା ଓ ଗହଣାପତ୍ର ଧରି ପଳେଇ ଆସିଲି ଓଡିଶା । କିନ୍ତୁ ବିଧାତା ଯେମିତି ମୋଠାରୁ ସବୁ ସୁଖ ଛଡେଇ ନେବାକୁ ପଣ କରି ବସିଥିଲା । ଏଠି ଆସି ପାଦ ଦେଉ ଦେଉ ଅତିଶୟ ଉଦବେଗ, ଆଶଙ୍କା ଓ ଭୟରୁ କି କ'ଣ ତିନିମାସର ମାଂସ ପିଣ୍ଡୁଳାଟା ଖସି ପଡିଲା । ବହୁତ କାନ୍ଦିଲି, ମୁଣ୍ଡ ପିଟିଲି । କପାଳକୁ ନିନ୍ଦିଲି । ଡହଳ ବିକଳ ହେଲି । ଜୀବନ ପ୍ରତି ଲୋଭ ଛାଡ଼ିଗଲା । ଦିନେ ଚାଲିଲି ଟ୍ରେନ ଲାଇନରେ ଜୀବନ ହାରିବାକୁ । କିନ୍ତୁ ବାଟରେ ପୁଣି ଜୀବନର ମୋଡ ବଦଳି ଗଲା । ରେଲ୍ ଲାଇନ୍ କଡରେ ବିଭତ୍ସ ଦୃଶ୍ୟଟିଏ ଦେଖି ମୋ ଛାତି ଫାଟି ପଡିଲା । ଅର୍ଦ୍ଧନଗ୍ନ ଅବସ୍ଥାରେ ପଡିଛି ମାଆଟିଏ । ପିଣ୍ଡରେ ପ୍ରାଣ ନାହିଁ । ଦୁର୍ବୃତ୍ତମାନଙ୍କର

ପାଶବିକ କ୍ଷୁଧାର ଶିକାର ହୋଇଛି ବିଚାରୀ । ଆଉ ମୃତା ମାଆର ଛାତିରେ ମୁହଁ ଲଗାଇ ଠୁଳ ହୋଇଥିବା ଲୋକଙ୍କୁ ଜୁଳୁଜୁଳୁ କରି ଚାହିଁଛି ବର୍ଷକର ଛୁଆଟିଏ । ମତେ ମନେହେଲା ମୋର ସେଇ ତିନିମାସ ତଳର ରକ୍ତ ପିଣ୍ଡୁଳାଟା ଏଇଠି ଜୀବନ୍ୟାସ ପାଇଛି । ନିଜକୁ ସମ୍ଭାଳି ପାରିଲି ନାହିଁ । ଛୁଆଟିକୁ ଟାଣି ଆଣିଲି ନିଜ ଛାତି ଉପରକୁ । କେହି କିଛି କହିବା ଆଗରୁ ଏକ ମୁହାଁ ହୋଇ ଧାଇଁଲି ଯେ ଧାଇଁଲି । ସେଇ ଛୁଆ ଏବେ ପାଲଟି ଯାଇଛି ମୋ ଜୀବନ ନାଟିକା ।

ଏକାଥରକେ ଏତକ କହିସାରି ସୁଲିଅପା ଟିକେ ନିଃଶ୍ୱାସ ନେଲା । ତା ପରେ ହତାଶ କଣ୍ଠରେ କହିଲା-ଯାହାକିଛି ଟଙ୍କା ସୁନାରୂପା ଆଣିଥିଲି ସବୁ ତାଆରି ନାଁରେ ଫିକ୍ସ ଡିପୋଜିଟ କରିଦେଇଛି । କିନ୍ତୁ ମୋର ଯଦି କିଛି ହୋଇଯାଏ... ଏତକ କହିଲା ବେଳକୁ ତା କଣ୍ଠ ରୁନ୍ଧି ହୋଇ ଆସିଲା ।... ଦିନେ ଏ ଜୀବନ ଦୁର୍ବିସହ ହେଉଥିଲା । ମୃତ୍ୟୁ ପାଇଁ ଗୁହାରୀ କରୁଥିଲି । ଆଜି କିନ୍ତୁ ଜୀବନ ଟିକିଏ ପାଇଁ ସେଇ ବିଧାତା ପାଖରେ ମୁଣ୍ଡ କୋଡୁଛି । ସବୁ ଏଇ ହତଭାଗାଟା ପାଇଁ ।

ମୁଁ ତାକୁ ସାନ୍ତ୍ୱନା ଦେଲି । କହିଲି - ଜୀବନ ବେଶ ସୁନ୍ଦର । ଏହାକୁ କେବଳ ବଞ୍ଚି ଜାଣିଲେ ହେଲା । କେତେକ କହନ୍ତି, ମଣିଷ ନିଜ ପାଇଁ ବଞ୍ଚେ । କିନ୍ତୁ ବେଳେବେଳେ ମଣିଷ ଅନ୍ୟ ପାଇଁ ମଧ୍ୟ ବଞ୍ଚେ । ଆଉ ଜାଣୁ କିଏ ସୁଖରେ ଆଉ ଖୁସିରେ ରହେ ! ଅନ୍ୟ ପାଇଁ ବଞ୍ଚୁଥିବା ଲୋକ ଜୀବନ ସାରା ଖୁସିରେ ରହେ । ନିଜ କଥା ସେ ଭୁଲିଯାଏ । କହିଲି-ବ୍ୟସ୍ତ ହଅନା ଅପା । ଡାକ୍ତରୀ ରିପୋର୍ଟରେ ଏଚ୍‌ଆଇଭି ପଜିଟିଭ ଆସିଗଲେ ଯେ ରୋଗୀ ଏଡ୍‌ସ ଆକ୍ରାନ୍ତ ହୋଇ ମରିଯାଏ ତାହା ଭୁଲ କଥା । ଠିକ୍ ଚିକିତ୍ସା ହେଲେ ସେ ଅନେକ ଦିନ ବଞ୍ଚିରହେ ।

ପୁଣିଥରେ ଆସିବାର ପ୍ରତିଶ୍ରୁତି ଦେଇ ମୁଁ ଫେରିଲି ସୁଲିଅପା ଘରୁ । ବାଟରେ ହଠାତ ମନେପଡ଼ିଲା ତା ଭାତୁଡି କଥା । ଆରେ, ଭାତୁଡିଟାକୁ ଦେଖିବାକୁ ତ ପୂରା ଭୁଲିଯାଇଛି ! ହଁ ସେଟାତ ସେମିତି ଥିଲା ତା ଜାଗାରେ... ସବୁ ଦୁର୍ଯୋଗର କାରଣ ସେ ଭାତୁଡିଟା ନୁହେଁ ତ ?



# ମିଛ ନିଆଁର ସତ ଧୂଆଁ

ବେନାମୀ କୋରିଅର ପ୍ୟାକେଟ୍ ଭିତରେ ଥିବା ବସ୍ତୁଟି ଉପରେ ଦୃଷ୍ଟି ନିବଦ୍ଧ ହେବାମାତ୍ରେ ହିଁ ମୋର ସକଳ ଉତ୍କଣ୍ଠା ହିମ ଶୀତଳ ପାଲଟିଗଲା । ମୁଁ ପୌରୁଷହୀନ ହୋଇ ପଡ଼ିବା ଭଳି ଅନୁଭବ କଲି । ମୋ ବିବେକ ମୋତେ ଶତ ବୃଶ୍ଚିକର ଦଂଶନ ଦେଲା, ଏକ ଭୀରୁ କାପୁରୁଷପଣ ମୋ ସର୍ବାଙ୍ଗରେ ସଞ୍ଚରିଗଲା । ଗୋଟିଏ ବାର ବରଷର ଅସହାୟ ଛୁଆଟା ପାଖରେ ମୋ ଅହଂକାର ବନ୍ଧାପଡ଼ିଗଲା । ହଁ ସେ ଆଉ ବାରବରଷର ହୋଇନଥିବ କି ହୁଏତ ଅସହାୟ ବି ନଥିବ । ପାଣି ଖାଇ ଖାଇ ଛେଦରା ହୋଇଯାଇଥିବା ଓ ଆକାଶକୁ ଆଁ କରି ଚାହିଁଥିବା ଜ୍ୟେଷ୍ଠ ମାସର ଫଟାମାଟି ପରି ତା' ପାଦ ଦୁଇଟି ମାଟିର ଛାତିରେ ଏବେ ଶକ୍ତ ହୋଇ ଠିଆ ହେଇପାରୁଥିବ । ବାସନ ମାଜି ମାଜି ଟାଆଁସା ପଡ଼ିଯାଇଥିବା ତା ପାପୁଲି ଦୁଇଟାରେ ଏବେ ପାଞ୍ଚ ପ୍ରାଣୀଙ୍କୁ ପୋଷିବାର ଶକ୍ତି ହୁଏତ ସଞ୍ଚୟ ହୋଇ ସାରିବଣି । ବୁନ୍ଦୁ ବୁନ୍ଦୁ ଲାଗୁଥିବା ତା'ର ନିରୀହ ଓ ତ୍ରସ୍ତ ଆଖି ଦୁଇଟାରେ ଅମାପ ଆତ୍ମବିଶ୍ୱାସର ଅକ୍ଷର ସବୁ ଖଞ୍ଜା ହୋଇସାରିବଣି ।

ମୁଁ ଯାହା କଥା କହୁଚି ସିଏ ଅନାଥ ବାଳକଟିଏ । ଦଶ ବାରବର୍ଷ ତଳେ ଆମ ଘରେ କାମଦାମ କରୁଥିଲା । ହଠାତ୍ ଦିନେ ସିଏ କାହାକୁ କିଛି ନ କହି ଗୋପନରେ ଏ ଘର ପରିତ୍ୟାଗ କରି ଚାଲିଯାଇଥିଲା । ସେଇଦିନଠୁ ଆଜିଯାଏ ଆମେ ତା'ର କୌଣସି ଖୋଜଖବର ନେଇ ନଥିଲୁ । ପୁଣି ଆଜି ବହୁଦିନ ପରେ ତା'ରି କଥା ।

ତା'ର ଏ ଦୁନିଆରେ କେହି ନଥିଲେ । ଯକ୍ଷ୍ମା ରୋଗ ଭୋଗୁଥିବା ତା ବୁଢ଼ା ଜେଜେ ବାପା ମୋ ପାଖରେ ତାକୁ ଛାଡିବାର ବର୍ଷେ ନ ପୁରୁଣୁ ସେପାରିକୁ ଚାଲିଯାଇଥିଲା । ଗାଁକୁ ଯାଇ ତା' ଶୁଦ୍ଧକ୍ରିୟା ସାରି ସ୍ୱଇଚ୍ଛାରେ ପିଲାଟି ପୁଣି ଫେରି ଆସିଥିଲା ଆମ ଘରକୁ । ସେଇ ଦିନଠୁଁ ଏ ଘରକୁ ସେ ତା' ନିଜ ଘରଠୁଁ ଅଧିକ ନିରାପଦ ମଣିଥିଲା ଆଉ ସଂପୂର୍ଣ୍ଣ ଭାବରେ ଆପଣାର ବୋଲି ଭାବିନେଇଥିଲା । ଆଗ ଅପେକ୍ଷା ଦୁଇଗୁଣ ନିଷ୍ଠାରେ କାର୍ଯ୍ୟ କରୁଥିଲା । ଧାଇଁ ଧପଡ଼ି ବୋଲହାକ କରୁଥିଲା । ନିଜ ମନକୁ ମନ ମୋ ବହିଥାକ ସଜାଡ଼ି ଦେଉଥିଲା । ମୋ ଅସଜଡ଼ା ଆଲମୀରା ଓ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡୁଥିବା ମୋ ପଢ଼ା ଟେବୁଲ ସଜେଇ

ଦେଉଥିଲା । ମୋ ଲୁଗାପଟା ଚଉତି ଦେଉଥିଲା । ଯୋତା ପଲିସ୍ କରି ଦେଉଥିଲା । ଟଙ୍କା ପଇସା ଟିଭି କିମ୍ବା ଟେବୁଲ ଉପରେ ପଡ଼ିଥିଲେ ସାଉଁଟିଆଣି ମୋ ହାତରେ ଦେଇ କହୁଥିଲା ।

'ବାବୁ ! ଏସବୁକୁ ଏମିତି ଇଆଡେ ସିଆଡ଼େ ଫିଙ୍ଗୁଛନ୍ତି କାହିଁକି ? ଇଏ ପରା ମାଆ ଲକ୍ଷ୍ମୀ । ଆଦର ଯତ୍ନରେ ସାଇତି ରଖନ୍ତୁ ।' ମୁରୁକି ହସରେ ମୋ ଦୁର୍ବଳତାକୁ ସ୍ୱୀକାର କରି ମୁଁ ତାକୁ ବାହାବା ଦେଉଥିଲି । ସେ କୃତକୃତ୍ୟ ହୋଇଯାଉଥିଲା । ସେ ଆଖି ସାମନାରୁ ଆଡ଼ ହେଇଗଲା ପରେ ମୋ ପତ୍ନୀ ପ୍ରତିମା ମୁହଁ ମୋଡ଼ି କହୁଥିଲେ- 'ପିଲାଟାର ଆଦବ କାଇଦା ମୋତେ ଆଦୌ ଭଲ ଲାଗୁନାହିଁ । ଅତି ଭକ୍ତି ଚୋର ଲକ୍ଷଣ ।'

ମୁଁ ତାଙ୍କ ମୁହଁକୁ ଚାହେଁ । କି ଧାତୁରେ ଗଢ଼ା ଏ ମଣିଷଟି । ଗୋପାଳ ଅର୍ଥାତ୍ ଏଇ ପିଲାଟି ବିନା ଗୋଟିଏ ମୁହୂର୍ତ୍ତ ବି ତାଙ୍କର ଚଳେ ନାହିଁ । ଅଥଚ ତା ପକ୍ଷ ସମର୍ଥନ କରି ଦିନଟିଏ ବି ତାଙ୍କ ଶ୍ରୀମୁଖରୁ ପଦେ ହେଲେ ଶୁଣିବାକୁ ମିଳିଲା ନାହିଁ । ଭୋର ପାଞ୍ଚଟାରୁ ରାତି ବାରଟା ପର୍ଯ୍ୟନ୍ତ ସେ ଏ ଘରେ ଲୋଟଣୀ ପାରା ଭଳି ଲୋଟି ପଡ଼ିଥାଏ । ଏ ଘରର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟର ମୂଳ ଏଇ ଗୋପାଳ । ଦିନ କେତେଟା ସେ ଜେଜେବାପାର ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ଗଲା ଯେ ମୋର କଲେଜ, ପିଲାଙ୍କ ଟିଉସନ, ତାଙ୍କର ରୋଷେଇ ଓ ଠାକୁର ପୂଜା ସବୁଠି ବିଭ୍ରାଟ, ବଜାରରୁ ସଉଦା ଓ ପନିପରିବା ଅଣାଯାଇ ପାରିଲା ନାହିଁ ଯେ ଅଧିକାଂଶ ବେଳେ ଡାଲି ଆଳୁ ଭର୍ତ୍ତାରେ ସନ୍ତୁଷ୍ଟ ରହିବାକୁ ପଡ଼ିଲା । ପତ୍ନୀ ଓ ପିଲାମାନଙ୍କର ଆପତ୍ତି ଅଭିଯୋଗ ଶୁଣି ଶୁଣି ମୁଁ ଅତିଷ୍ଠ ହୋଇପଡିଲି । ସ୍କୁଲ ଡ୍ରେସ୍ ଆଇରନ୍ ହୋଇ ପାରୁ ନଥିଲା । ବହିପତ୍ର ଅସଜଡ଼ା ହୋଇପଡୁଥିଲା । ଦାଣ୍ଡ ବାଡ଼ି ମଇଳା ଜମି ଯାଉଥିଲା । କୁକୁରକୁ ଖାଇବା ଦିଆ ହୋଇ ପାରୁ ନଥିଲା । ପୂଜା ପାଇଁ ଫୁଲ ତୋଳା ହୋଇପାରୁ ନଥିଲା । ଗୋପାଳ ଯେ ପୁଣି ଫେରିବ ଏ ଭରସା ପ୍ରତିମାଙ୍କର ନଥିଲା । ନୂଆ ପିଲାଟିଏ ଯୋଗାଡ଼ କରିବା ପାଇଁ ସେ ମୋତେ ଅସ୍ତବ୍ୟସ୍ତ କରିଦେଉଥିଲେ ।

ସବୁ ପ୍ରତୀକ୍ଷାର ଅନ୍ତ କରି ଗୋପାଳ ସ୍ୱତଃ ଫେରିଥିଲା । ତାଙ୍କ ପିଣ୍ଡରେ ପ୍ରାଣ ପଶିଲା ଭଳି ସେ ଆଶ୍ୱସ୍ତି ବୋଧ କଲେ । ଏଥରକ ସେ ତା'ପ୍ରତି ଟିକେ ନରମ ମନୋଭାବ ପୋଷଣ କଲାଭଳି ମୁଁ ଅନୁଭବ କରୁଥିଲି । ଆମ ପରିବାରର ପ୍ରତିଟି ସଦସ୍ୟ ପାଇଁ ଗୋପାଳର ଆବଶ୍ୟକତା ଅପରିହାର୍ଯ୍ୟ ଓ ବଞ୍ଚିବା ପାଇଁ ତା'ର ବି ଟିକେ ସ୍ନେହ ସହାନୁଭୂତି ଆବଶ୍ୟକ । ଡେରିରେ ହେଉପଛେ ସେ ଉପଲବ୍ଧି କରିଛନ୍ତି । ମୁଁ ଚିନ୍ତାମୁକ୍ତ ହେଲି । ଅନାଥ ପିଲାଟା ଥଳକୂଳ ପାଇଲା । ତା' ବୁଢ଼ା ଜେଜେ ବାପାଙ୍କୁ ଦେଇଥିବା ମୋର ପ୍ରତିଶ୍ରୁତି ବୃଥା ହୋଇନାହିଁ ।

ଗୋପାଳ ଆଉ ଆମ ଘରର ଚାକର ହେଇନଥିଲା । ଘରର ସବୁତକ ଦାୟିତ୍ୱ ସେ ଆପେ ମୁଣ୍ଡେଇ ସାରିଥିଲା । ପିଲାମାନଙ୍କ ପାଇଁ ସେ ସ୍ୱୟଂପ୍ରସ୍ତୁତ ଯନ୍ତ୍ରଟିଏ ଥିଲା । ପତ୍ନୀଙ୍କର ସେ ଥିଲା ଡାହାଣ ହାତ । ମୁଁ ତ ସଂପୂର୍ଣ୍ଣ ଗୋପାଳ ସମର୍ପିତ ହୋଇସାରିଥିଲି । ସେ ଆସିଲା ପରଠୁଁ ହାଟବଜାର ତ ମୁଁ ଛାଡ଼ି ସାରିଥିଲି । ଏବେ ପୋଷ୍ଟ ଅଫିସ, ଡାକ୍ତରଖାନା, ବିଜୁଳି - ଟେଲିଫୋନ୍ ବିଲ ବାନ୍ଧିବା, ମୋ ଲେଖା ପଢ଼ା ପାଇଁ କାଗଜ କିଣିବା ପର୍ଯ୍ୟନ୍ତ ସବୁ ଦାୟିତ୍ୱ ସେ ଆପଣେଇ ନେଇଥିଲା । ସେ ଯେତିକି ଆମ ପରିବାର ଦାୟିତ୍ୱ ସହ ଜଡ଼ିତ ହୋଇ ପଡୁଥିଲା ଆମେ ସେତିକି ତା'ପ୍ରତି ଉଦାସୀନ ରହୁଥିଲୁ । ତା ଖାଇବା, ପିନ୍ଧିବା, ଦେହ ପା ପ୍ରତି ଆମେ କେହି ନିଘା ଦେଉନଥିଲୁ । ତା ଜେଜେ ବାପା ଚାଲିଗଲା ପରେ କେବେ ହାତ ପାତି ମାଗିନଥିବା ତା' ପାରିଶ୍ରମିକ ଗଣ୍ଡାକ ବି ଠିକ୍ ସମୟରେ ତା' ବ୍ୟାଙ୍କ ଏକାଉଣ୍ଟରେ ରଖିବା ପାଇଁ ମୁଁ ଭୁଲିଯାଇଥିଲି । ମୋ ଅନ୍ୟାନ୍ୟ ଭୁଲା ପଣକୁ ବାରମ୍ବାର ଛିଗୁଲେଉଥିବା ପତ୍ନୀ ଏ ପ୍ରସଙ୍ଗରେ କିନ୍ତୁ ସଂପୂର୍ଣ୍ଣ ନିର୍ବିକାର ଥିଲେ ।

ଦିନେ ଖାଇ ବସିବାବେଳେ ମୋ ଶୂନ୍ୟ ଆଙ୍ଗୁଳି ଦେଖି ସେ ଚିର୍‌ଚିରେଇ ଉଠିଲେ - ଆରେ ତମ ମୁଦିଟା କୁଆଡେ ଗଲା ? ମୁଁ ନିର୍ଲିପ୍ତ କଣ୍ଠରେ କହିଲି- ବାଥ୍ ରୁମ୍‌ରେ ଥିବ ।

ସେ ଡାକ ଛାଡ଼ିଲେ ଗୋପାଳକୁ । ବାଥ୍‌ରୁମରୁ ବାବୁଙ୍କ ମୁଦିଟା ଆଣିଲୁ । ଗୋପାଳ ନିରାଶ ହେଲା । ମୁଦି ବାଥ୍‌ରୁମ୍‌ରେ ନଥିଲା । ସେ ଆହୁରି ବ୍ୟସ୍ତ ହୋଇ ପଡ଼ିଲେ । କୁଆଡ଼େ ଗଲା ତା' ହେଲେ ? କେବଳ ସେଦିନ ନୁହେଁ, ଏମିତି ଅନେକବାର ମୁଁ ବାଥ୍ ରୁମ୍‌ରେ ମୁଦି ଛାଡ଼ି ଆସୁଥିଲି । ଗୋପାଳ ଚିରାଚରିତ ଶାସନ କରିବା ଭଙ୍ଗୀରେ ତାହା ସଂଗ୍ରହ କରି ମୋ ହାତରେ ଦେଉଥିଲା । ମୁଁ ତେଣୁ ବ୍ୟସ୍ତ ହେଉ ନଥିଲି ।

ସେଦିନ ମୁଦିଟି ଆଉ ମିଳିଲା ନାହିଁ । ଖ୍ୱନ୍‌ଭିନ୍ କରି ଘର ସାରା ଖୋଜାଗଲା । ସବୁ ଚେଷ୍ଟା ବ୍ୟର୍ଥ ଗଲା । ମୋ ମନଟା ବି ଖରାପ ହୋଇଗଲା । ମୁଦିଟାର ଗୋଟିଏ ଐତିହ୍ୟ ଥିଲା । ମୋ ଅଜା ବାପାଙ୍କୁ ଦେଇଥିଲେ ବାଟ ବରଣୀରେ । ଉତ୍ତରାଧିକାର ସୂତ୍ରରେ ମୁଁ ପାଇଥିଲି ସେଇଟା । ମୟୂର ଚନ୍ଦ୍ରିକା ମଝିରେ ଶଙ୍ଖଟିଏ । ଶଙ୍ଖ ଚାରିପଟେ ବିଚିତ୍ର କୋଟିକମରେ ଚମତ୍କାର ଦିଶୁଥିଲା । ମୋ ଅପେକ୍ଷା ଅଧିକ ବ୍ୟସ୍ତ ହେଉଥିଲେ ପ୍ରତିମା । ସେଇ ଖୋଜିବା ଭିତରେ ଏ କାଣ୍ଡ ଯେ ଗୋପାଳ ଛଡ଼ା ଆଉ କାହାର ନୁହେଁ, ତାକୁ ଆକ୍ଷେପ କରି ଅନେକବାର ସେ କହି ସାରିଲେଣି । ଗୋପାଳ ତାଙ୍କ ଆକ୍ଷେପର ଅର୍ଥ ବୁଝୁଥିଲା କି ନାହିଁ କେଜାଣି, ନିରୀହ ଭୟାତୁର ଦୃଷ୍ଟିରେ ସେ ମୋତେ ବଲ ବଲ କରି ଚାହୁଁଥିଲା । ତା'ପାଟିରେ ତ ଭାଷା ନଥିଲା, ସେ ନିରୀହ ଆଖି ଯେମିତି ମୋତେ କହୁଥିଲା- "ବାବୁ ! ମୁଁ ନିର୍ଦ୍ଦୋଷ । ମୋତେ ବିଶ୍ୱାସ କରନ୍ତୁ !"

ମୁଁ ଶ୍ରୀମତୀଙ୍କୁ କହିଲି- ତମେ ବ୍ୟସ୍ତ କାହିଁକି ହେଉଛ । ମୁଦିଟା ମିଳିବ । ସେ ଏ ଭିତରେ କେତେ ଦେବଦେବୀଙ୍କୁ ମନାସ କରି ସାରିଲେଣି । ତଥାପି ସେମାନଙ୍କ ଉପରେ ସେ ଆସ୍ଥା ସ୍ଥାପନ କରି ପାରୁନାହାନ୍ତି । ତାଙ୍କର ସବୁ ସନ୍ଦେହ ଓ ଅବିଶ୍ୱାସ ଏକୀଭୁତ ହେଲା ଗୋପାଳ ପାଖରେ । ସେ ବେଳକୁ ବେଳ ଅଥୟ ହୋଇପଡୁଥିଲେ । ତାଙ୍କର ସେ କୁତ୍ସିତ ଭାବନାଗୁଡ଼ିକୁ ସେ ଆଉ ବେଶି କାଳ ନିୟନ୍ତ୍ରଣରେ ରଖିପାରିଲେ ନାହିଁ । ସେଦିନ ହଠାତ୍ କଣ୍ଠସ୍ୱରରେ କର୍କଶତା ଭରି ଦେଇ ସେ ବିସ୍ଫୋରଣ କଲାପରି କହିଲେ, ଛୋଟ ଲୋକଗୁଡ଼ାକୁ ଯେତେ ଉଚ୍ଚ ଆସନ ଦେଲେ ବି ସେମାନେ କ'ଣ ତାଙ୍କ ପ୍ରକୃତି ଛାଡ଼ିବେ ? ତମେ ଗୋପାଳକୁ ପୋଲିସରେ ଦିଅ । ଆଜି ମୁଦିଟା ଗଲା, କାଲି ଆଉ କ'ଣ ଯିବ ।

ମୋର ଧୈର୍ଯ୍ୟଚ୍ୟୁତି ଘଟିଲା । ମୁଁ ଜାଣିଥିଲି, ତାଙ୍କର ଏ ପ୍ରକାର ଅଭିଯୋଗ ଥରେ ମୁହଁରୁ ବାହାରିଲେ ତାହା ବିଭିନ୍ନ ରୂପରେଖ ନେଇ ଆତ୍ମପ୍ରକାଶ କରିବ । ଏଠି ବସି ରହିବା ନିରାପଦ ମନେ ନ କରି ରୁମ୍ ବାହାରକୁ ବାହାରି ଆସିଲି । ହତବାକ୍ ହୋଇଗଲି ମୁଁ ।

ପରଦା ସେପଟେ ମୋ ପାଇଁ କ୍ଷୀର ଗ୍ଲାସଟା ଧରି ଠିଆ ହେଇଚି ଗୋପାଳ । ମୁଁ ଅପ୍ରସ୍ତୁତ ହୋଇ ପଡ଼ିଲି । ସେ ଅସହାୟ ଦୃଷ୍ଟିରେ ମୋ ମୁହଁକୁ ଚାହିଁଲା । ସେ ଆଖି ଦୁଇଟା ଯେମିତି ମୋତେ କହୁଥିଲା-

ଏ ଆଖି କ'ଣ ତମ ଆସ୍ଥା ଓ ବିଶ୍ୱାସକୁ ପ୍ରତାରିତ କରିପାରେ ? ମୁଁ ତା ମୁହଁକୁ ଚାହିଁ ପାରିଲି ନାହିଁ । ଆଳ ଦେଖାଇ ବାଥ୍ରୁମ୍ ଭିତରକୁ ପଶିଗଲି ।

ତା'ର ବୋଧହୁଏ ମୋ ଉପରୁ ଭରସା ତୁଟିଗଲା । ସେଇଦିନ ରାତି ପାହାନ୍ତାରୁ ସେ ଅନ୍ତର୍ଦ୍ଧାନ ହୋଇଯାଇଥିଲା । ଶ୍ରୀମତୀ ମୋତେ ଛିଗୁଲେଇଲେ- ତମର ପରା ତା' ଉପରେ ଅଗାଧ ବିଶ୍ୱାସ ଥିଲା । ମୁଁ ଦେଖେ, ଆହୁରି କେତେ କ'ଣ ଯାଇଥିବ ।

କିନ୍ତୁ ସେଇ ମୁଦିଟା ଛଡ଼ା ଆଉ ଯାହା ଯେଉଁଠି ଥିଲା ସବୁ ସେମିତି ଥିଲା । କୋଉଠି ବି ସେ ଟିକେ ଟିପ ଛୁଇଁ ନଥିଲା । କିନ୍ତୁ ତା'ର ଆକସ୍ମିକ ଅନ୍ତର୍ଦ୍ଧାନଟାକୁ ମୁଁ ସହଜ ଭାବରେ ଗ୍ରହଣ କରିପାରୁ ନଥିଲି । ପତ୍ନୀଙ୍କ ସନ୍ଦେହ ଭିତରେ କୋଉଠି ବି ଟିକେ ସତ୍ୟତା ରହିଥାଇପାରେ, ସେମିତି ମୁଁ ଅନୁଭବ କଲି । ମୁଦି ହଜିବା ଜନିତ ଯନ୍ତ୍ରଣାରୁ ଆମେ ଦୁହେଁ ମୁକ୍ତ ହୋଇପାରୁ ନଥିଲୁ । ତାଙ୍କର ଥିଲା ବାରଣା ଓଜନର ସୁନା ହରେଇବାର ବ୍ୟଥା ମୋର ଥିଲା ଗୋପାଳକୁ ହରେଇବାର ବେଦନା । ଗୋପାଳ ମୋ ଭରସା ଓ ବିଶ୍ୱାସରେ ବିଷ ଭରି ଦେଇଛି । ଏକ ତୀବ୍ର ଜ୍ୱାଳା ମୋ ଅନ୍ତଃସ୍ଥଳକୁ ବିଦୀର୍ଣ୍ଣ କରିଦେଇଥିଲା ।

ଗୋପାଳ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ ହୋଇ ପଡ଼ିଥିବା ମୋ ପରିବାରଟି ସେ ଚାଲିଗଲା ପରେ ଦୈନନ୍ଦିନ ଜୀବନରେ ବେଶ୍ କିଛିଦିନ ଅବ୍ୟବସ୍ଥିତ ହୋଇ ପଡ଼ିଲେ ବି ଗୋପାଳ ଯେ ଆମ ଦାୟିତ୍ୱ ସମ୍ଭାଳିବା ପାଇଁ ଆଉ ଆସିବ ନାହିଁ- ଏ ନିଷ୍ଠୁର ସତ୍ୟକୁ ଆମେ ସମସ୍ତେ ସ୍ୱୀକାର କରିନେଇଥିଲୁ । ମୁଁ, ପ୍ରତିମା, ଏପରିକି ପିଲାମାନେ ବି, ଯେ ଯାହାର କାମ କରିବାରେ ଅଭ୍ୟସ୍ତ ହୋଇପଡ଼ିଲୁ । ଗୋପାଳର ଅନୁପସ୍ଥିତ ଆମକୁ ଆଉ ଏତେ ଅସହାୟ କଲା ନାହିଁ । ଏ ଭିତରେ ଠିକା ଚାକରାଣୀଟିଏ ବି ଯୋଗାଡ଼ ହୋଇସାରିଥିଲା । ସେ ସକାଳେ ଓ ଉପରବେଳା ଘଣ୍ଟାଏ ଲେଖା ଆସି ବାସନ ମଜା, ଘର ଓଳା, ଲୁଗା ସଫା କାମ ସାରି ଚାଲିଯାଉଥିଲା । ଦିନେ ଅଧେ ଆଉ ଅଧିକ କାମଟିଏ ବତେଇଲେ ଇଚ୍ଛାହେଲେ ଗର୍ ଗର୍ ହେଇ ସେତକ କରି ଦେଉଥିଲା ନଚେତ୍ ନାହିଁ । ତଥାପି ଏସବୁକୁ ପ୍ରତିମା ସହିନେଉଥିଲେ । ଗୋପାଳ ଭଳି ତା' ଉପରେ ତାଙ୍କର ଅଦଉତି ନଥିଲା । ଦଦରା ହାଣ୍ଡିକୁ ତଳିହାତ କଲା ପରି ସେ କାମ ଚଳେଇ ନେଉଥିଲେ ।

ଗୋପାଳ ଘର ଛାଡ଼ିବାର ଦୁଇବର୍ଷ ବିତିଗଲାଣି । ତା ସ୍ମୃତିରେ ବି ଅଳନ୍ଧୁ ଜମି ଯାଇଥିଲା । ତାର ଆବଶ୍ୟକତାକୁ ଆଉ କେହି ଅନୁଭବ କରୁନଥିଲେ । ବୋଉ ଅସୁସ୍ଥ ଥିବାରୁ ସେ ମୋ ପାଖରେ ଥିଲା । ବାପାଙ୍କ ଶ୍ରାଦ୍ଧଟା ତେଣୁ ଗାଁରେ ନ କରି ଏଇଠି ସରକାରୀ କ୍ୱାର୍ଟରରେ କରିବାର ନିଷ୍ପତ୍ତି ନେଲୁ । ତା ପୂର୍ବରୁ ଘରଟାକୁ ହ୍ୱାଇଟ୍ ୱାଶ୍ କରିବାକୁ ବୋଉ କହିଲା । ଚୂନ ଦେବା ଲୋକ ଆସି ପହଞ୍ଚି ଯାଇଥିଲେ । ଘରୁ ଆସବାବପତ୍ର ଘୁଞ୍ଚାଘୁଞ୍ଚି ହେଲେ ସେମାନେ କାମ ଆରମ୍ଭ କରିବେ ବୋଲି ଅପେକ୍ଷା କରିଥିଲେ । ଆମେ ସମସ୍ତେ ଲାଗି ପଡ଼ିଥିଲୁ କାମରେ । କାନ୍ଥକୁ ଲାଗି ଥୁଆ ହୋଇଥିବା ମୋ ବହିଥାକଟି ଘୁଞ୍ଚେଇ ଆଣିଲା ବେଳକୁ ଠଣ୍ କରି କ'ଣ ଗୋଟିଏ ତଳେ ପଡ଼ି ଖଟତଳକୁ ଗଡ଼ିଗଲା । ମୁଁ କୌତୁହଳ ଦମନ କରି ନପାରି ନଇଁ ପଡ଼ି ଟର୍ଚ୍ଚ ପକେଇଲି । ଚକ୍ ଚକ୍ କରୁଥିବା ବସ୍ତୁଟି ଉପରେ ମୋ ଦୃଷ୍ଟି ପଡ଼ିବା ମାତ୍ରେ ମୋ ଛାତି ଭିତରେ କିଏ ଯେମିତି ହାତୁଡ଼ିରେ ଦୁଇ ପାହାର କଷି ଦେଲା । ଗୋଧିପରି ଲେପଟେଇ ପଡ଼ି ହାତ ଲମ୍ବେଇ ସେଇ ମହାର୍ଘ ବସ୍ତୁଟି ଧରି ଜୋର୍‌ରେ ପାଟି କରି ଉଠିଲି ।

"ପ୍ରତିମା, ଦେଖ ! ମୁଁ କ'ଣ ପାଇଚି ।"

ଆରପଟ ଘରୁ ପ୍ରତିମା, ବୋଉ ଓ ପିଲାମାନେ ବାହାରି ଆସିଲେ । ମୁଁ ଆନନ୍ଦରେ ଅଧୀର ହୋଇ ପଡ଼ି କହିଲି-

- "ମୁଁ ଜାଣିଥିଲି, ଗୋପାଳ କେବେ ଏମିତି କାମ କରିନଥିବ । ଅଯଥାରେ ଅନାଥ ପିଲାଟା ଘରଛାଡ଼ି ଚାଲିଗଲା ।"

ପ୍ରତିମାଙ୍କ ମୁହଁ କଳାକାଠ ପଡ଼ିଗଲା । ମୁଦିଟି ହଜିଥିବାବେଳେ ସେ ଯେମିତି ଦୁଃଖରେ ଅଧୀର ହୋଇ ପଡୁଥିଲେ, ଏବେ ସେଥିରୁ ଜାଣିଚାଏ ଆନନ୍ଦର ବିଭୋରତା ମୁଁ ତାଙ୍କ ମୁଖମଣ୍ଡଳରେ ଖୋଜି ପାଇଲି ନାହିଁ । ନିଷ୍ପ୍ରଭ କଣ୍ଠରେ ସେ କହିଲେ-

'ଯାହାହେଉ, ମିଳିଗଲା । ସୁବର୍ଣ୍ଣ ହଜିଲେ ଦୋଷ, ପାଇଲେ ବି ଦୋଷ । ଆମର ସବୁ ଗ୍ରହ କଟିଗଲା ।'

କିନ୍ତୁ ଗୋପାଳ ଯେ ନିର୍ଦ୍ଦୋଷ - ଏ ସତ୍ୟଟାକୁ ସାବ୍ୟସ୍ତ କରିବା ପାଇଁ ଆମେ ଏତେଟିକେ ବି ପ୍ରଚେଷ୍ଟା କଲୁ ନାହିଁ । ତାଙ୍କ ଆଡୁ ସେପରି କିଛି ବ୍ୟଗ୍ରତା ପ୍ରକାଶ ନ ହେବାରେ ତ ମୁଁ ଆଶ୍ଚର୍ଯ୍ୟ ହେଲିନାହିଁ । ତା ଗାଁ ଠିକଣା ମତେ ଅଜଣା ନଥିଲା । ମୁଁ ଚାହିଁଥିଲେ ତା'ର ସନ୍ଧାନ ନେଇ ପାରିଥା'ନ୍ତି ଓ ଯେଉଁ ଅପରାଧ ମୁଣ୍ଡେଇ ଏପର୍ଯ୍ୟନ୍ତ ସେ ଗଭୀର ମନସ୍ତାପ ଭିତରେ ରହିଛି ତାକୁ ସେଥିରୁ ମୁକ୍ତି ଦେଇ ପାରିଥାନ୍ତି । କିନ୍ତୁ ସଜ୍ଞାନ ଚିତ୍ତରେ ମୁଁ ଏ ପ୍ରସଙ୍ଗଟିକୁ ଏଡେଇ ବସିଲି । ବୋଧହୁଏ ଗୋପାଳ ପାଖରେ ଆଉଥରେ ନ୍ୟୂନ ହୋଇଯିବାର ମାନସିକତା ମୋର ନଥିଲା ।

ଆଜି ପୁଣି ବାରବର୍ଷ ପରେ ସେଇ ଉତ୍ପୀଡ଼କ ଅତୀତଟା ନବଜନ୍ମ ଲାଭ କରି ମୋ ପୌରୁଷକୁ ଆହ୍ୱାନ ଦେଉଛି । କୋରିଅର୍‌ରେ ଆସିଥିବା ମୁଦିଟି ସହ ବହୁ ପରିମାଣରେ ସାମ୍ୟ ରଖିଥିବା ମୋ ଅନାମିକା ଆଙ୍ଗୁଠିର ମୁଦି ପରଖିବା ପାଇଁ, ଭାବ ବିହ୍ୱଳ ହୋଇ ଦୁଇହାତ ପାପୁଲି ଭିତରେ ଦୁଇଟି ଯାକ ରଖି ମୁଁ ଏପଟ ସେପଟ କରୁଥିଲି ଓ ଗୋପାଳର ସ୍ମୃତିଶକ୍ତି ଏବଂ କଳାଜ୍ଞାନକୁ ମନେ ମନେ ତାରିଫ୍ କରୁଥିଲି ।

ପ୍ରତିମା ରୁମ୍ ଭିତରକୁ ପଶି ଆସି କହିଲେ- କୋରିଅର୍ ବାଲା କ'ଣ ଆଣିଥିଲା କି ?

ମୁଁ ନିରାସକ୍ତ କଣ୍ଠରେ କହିଲି-

ମୁଦି, ଗୋପାଳ ପଠେଇଛି । ଯଦିଓ ବେନାମୀ କୋରିଅରରୁ ପ୍ରେରକର ନାଁ, ଠିକଣା ଜାଣିବାର କୌଣସି ଅବକାଶ ନଥିଲା ।

ତାଙ୍କର କୌଣସି ପ୍ରତିକ୍ରିୟା ଜାଣିବାର ଆଗ୍ରହ ମୋର ଆଦୌ ନଥିଲା ।



# ନିଷ୍ଫଳା ଭୂମି

ଓଦାମାଟି ଭଳି ଲିପି ବତୁରି ଯାଉଥିଲା, ତା ଘରକରଣା, ସଂସାର ଅଧ୍ୟାପିକା ଭାବରେ ତାର ପ୍ରତିଷ୍ଠା, ଏ ସବୁକୁ ସିଧାସଳଖ ଅସ୍ୱୀକାର କରି କହୁଥିଲା ।

"ଆଚ୍ଛା ! ତମେ କୁହତ, ଧନ, ଯଶ, କୀର୍ତ୍ତି ଏସବୁ ତ ମଣିଷ ହାତର କଥା । ସାଧନାରେ ଯଦି ଆନ୍ତରିକତା ଥାଏ, ସିଦ୍ଧିତ ଆସିବ ହିଁ ଆସିବ । କେବଳ ଯାକୁ ନେଇ କଣ ଜୀବନ ବଞ୍ଚିହୁଏ ? ଜୀବନର ଅଧୁରାପଣକୁ ଏସବୁ କଣ ପୂର୍ଣ୍ଣାଙ୍ଗ କରିପାରେ ? ମତେ ତ ଭଗବାନ ଅସଂପୂର୍ଣ୍ଣ କରି ଦୁନିଆକୁ ପଠେଇଛନ୍ତି, ମୁଁ ଦୋଷଦେବି କାହାକୁ ?" ସେ ଆଉ କହିପାରିଲା ନାହିଁ । ତା କଣ୍ଠ କେମିତି ଭାରିଭାରି ହୋଇଗଲା । ମୁଁ ତା ମୁହଁକୁ ଚାହିଁଲି, ତାର ଦୁଇ ସୁନ୍ଦର ଆଖିପତା ତଳେ ମୁକ୍ତା ବିନ୍ଦୁଭଳି ଦୁଇଟୋପା ଲୁହ ଟଳଟଳ ହେବାର ସ୍ପଷ୍ଟ ବାରିହେଇ ପଡୁଥିଲା, ତଥାପି ସେ ତାକୁ ଖସିବାକୁ ଦେଉନଥିଲା,

ମୁଁ କଲେଜରେ ପଢ଼ିବା ବେଳଠୁ ଲିପି ସହ ମୋର ସଂପର୍କ, ସେ ଆମର ଦୁଇବ୍ୟାଚ୍ ତଳେ ପଢୁଥିଲା । ଶାରୀରିକ ସୌନ୍ଦର୍ଯ୍ୟ ସାଙ୍ଗକୁ ତାର ମେଧା ଓ ଶାଣିତ ବ୍ୟକ୍ତିତ୍ୱ ଖୁବ୍ କମ୍ ଦିନ ଭିତରେ ତାକୁ କଲେଜରେ ସମସ୍ତଙ୍କର ପ୍ରିୟପାତ୍ରୀ କରିଥିଲା । ଆବଶ୍ୟକ ସ୍ଥଳେ ତା ଉପର କ୍ଲାସ୍ ପିଲାମାନେ ବି ତା ସାହାଯ୍ୟ ସହଯୋଗ ଓ ପରାମର୍ଶ ଲୋଡୁଥିଲେ । ତା ସଦା ହସହସ ମୁହଁରେ ଗଭୀର ଆତ୍ମ ପ୍ରତ୍ୟୟର ରଙ୍ଗ ସର୍ବଦା ବୋଳି ହୋଇଥିବା ଭଳି ମନେ ହେଉଥିଲା, ଅନ୍ୟମାନଙ୍କୁ ସାହସ ଧୈର୍ଯ୍ୟ ଶିଖାଉଥିବା ଝିଅଟା ଯେ ଜୀବନ ଯୁଦ୍ଧରେ ଏମିତି ହାରିଯିବ ମୋର ବିଶ୍ୱାସ ହେଉ ନଥିଲା ଆଦୌ ।

ମୁଁ ତା କପାଳ ଉପରେ ହାତ ରଖି କହିଲି "ତୁ ଏମିତି ବ୍ୟସ୍ତ ହେଉଛୁ କାହିଁକି ଲିପି ? ବାହାଘରର ୧୫/୨୦ ବର୍ଷ ପରେ କେହି କେହି ମାଆ ହେଉଛନ୍ତି । ତୋ ବାହାଘର ଏମିତି କେତେ ଦିନ ହେଇଗଲା ଯେ ତୁ ଧୈର୍ଯ୍ୟହରା ହୋଇ ପଡୁଛୁ ? ତୋ ବରର କଣ ପ୍ରତିକ୍ରିୟା ?"

'ସିଏ ଯଦି ପ୍ରତିକ୍ରିୟା ଦେଖାଇଥାନ୍ତେ, ସତ କହୁଛି ଅପା ! ମୁଁ ଏତେ କଷ୍ଟ ପାଇନଥାନ୍ତି ।'

ପଦ୍ମପତ୍ରରେ ଢ଼ଳଢ଼ଳ ହେଉଥିବା ଜଳବିନ୍ଦୁ ଦୁଇଟି ଠକ୍ ଠକ୍ ହେଇ ତା ଦୁଇଗାଲ ଉପର ଦେଇ ଗଡିଗଲା । ସେ ଅପ୍ରସ୍ତୁତ ହୋଇ ପଡି କହିଲା,

ସିଏ ଅଚଳ ମହାମେରୁ ଦାରୁଭୂତ ମୁରାରି । ମୋ ଜୀବନର ବ୍ୟର୍ଥତା ହା' ହୁତାଶ ଯେମିତି ତାଙ୍କ ପାଇଁ କିଛି ଅର୍ଥ ରଖେ ନାଇଁ । ସବୁ ଯନ୍ତଣାର ବିଷକୁ ସିଏ ନୀଳକଣ୍ଠ ସାଜି ଗଳସ୍ଥ କରିଦେଉଛନ୍ତି ନିର୍ବିକାର ଭାବରେ । ମୁଁ ଯେତେ ଲୁଚେଇଲେ ବି ଶାଶୁ ଶଶୁରଙ୍କ ମୋ ପ୍ରତି କଟାକ୍ଷ, ଲାଞ୍ଛନା ଓ ଅସନ୍ତୋଷ ତାଙ୍କ ପାଖରେ ଧରା ପଡିଯାଏ । ବାପା ମାଆଙ୍କୁ କିଛି କହିପାରନ୍ତି ନାହିଁ । ମତେ ସ୍ନେହ ମମତାରେ ଜୁଡୁବୁଡୁ କରି ଦିଅନ୍ତି । ତାଙ୍କର ଉଦାର ଓ ପ୍ରଶସ୍ତ ଛାତି ଉପରେ ମୋତେ ଜାବୁଡି ଧରି ମୋ ଧୈର୍ଯ୍ୟର ଗଭୀରତା ମାପି ବସନ୍ତି । ମୋ କାନ ପାଖରେ ମୁହଁ ରଖି ସେ ଗଦ୍ ଗଦ୍ ହୋଇ କହନ୍ତି ।

'ମୋ ଉପରେ କଣ ତମର ଭରସା ନାହିଁ ଲିପି ! ଦୁହେଁ ଦୁହିଁଙ୍କୁ ଏମିତି ନିବିଡ଼ ଭାବରେ ଅନୁଭବିଲା ପରେ ବି ତମେ କଣ ଭାବୁଛ ତମେ ମତେ ପିତାହେବାର ସୌଭାଗ୍ୟ ଦେଲ ନାହିଁ ବୋଲି ତମ ପ୍ରତି ମୋର ଭଲପାଇବା ଊଣା ହୋଇଯିବ ? ମୁଁ ତୁମରି ଭିତରେ ଗୋଟିଏ ଲାଲ୍ ଗୁଲୁଗୁଲୁ କୁନି ଚଗଲି ଆଉ ଫୁଲେଇ ଝିଅଟିକୁ ଦେଖେ । ତାର ଦୁଷ୍ଟାମୀକୁ ଅନୁଭବ କରେ, ସିଏ ମତେ ବାପା ବାପା ଡାକି ଅସ୍ଥିର କରି ପକାଏ । ଦୁଇ କୁନି କୁନି ହାତ ବଢ଼େଇ ପ୍ରଜାପତି ଧରିଦେବାକୁ ଅଳିକରେ । ପୁଣି ଦରକାର ପଡିଲେ କାନ୍ଦିକାନ୍ଦି ଭୂଇଁରେ ଧୂଳି ଧୂସରିତ ହୋଇ ଲୋଟିପଡେ ଠିକ୍ ଏମିତି,' ମୋ ଆଖିରୁ ଲୁହ ପୋଛି ଦେଉଦେଉ ସେ ହଠାତ୍ ଗମ୍ଭୀର ହୋଇଯାନ୍ତି । ଦାର୍ଶନିକ ସୁଲଭ ଠାଣିରେ କହନ୍ତି ।

'ସତ କୁହତ ତ ଲିପି ! ତମେ କଣ ମତେ ନେଇ ସେମିତି କିଛି ଅନୁଭବ କରନାହିଁ ?ମୋର ଭଲପାଇବା ସ୍ନେହ ପ୍ରେମ, ତମକୁ ଏକାନ୍ତ ଭାବରେ ପାଇବାର ବ୍ୟାକୁଳତା ଭିତରେ ତମର ବାତ୍ସଲ୍ୟ ମମତା କଣ ପ୍ରଶମିତ ହୁଏ ନାହିଁ ?' ସେ ଭାବ ପ୍ରବଣ ହୋଇପଡ଼ନ୍ତି । ମୁଁ ବ୍ୟସ୍ତ ହେଇ ପଡେ ମୋ ମନର ବେଦନାକୁ ଦୂର କରିବାକୁ ଯାଇ ସେ ନିଜେ ବେଦନାବିଦ୍ଧ ହୋଇ ପଡୁଛନ୍ତି, ମୁଁ କେମିତି ସହନ୍ତି କହିଲ ଅପା !

'ଅସହାୟତାରେ, ସଂକୋଚରେ ମୁଁ ଏତେ ଟିକିଏ ହୋଇଯାଏ । ବେଳେବେଳେ ତ ଏ ଜୀବନକୁ ନିଜ ହାତରେ ଶେଷ କରିବାକୁ ଇଚ୍ଛା ହୁଏ, କିନ୍ତୁ ସେଇଟା କଣ ଏତେ ସହଜ ?'

ଏକ ପ୍ରଗଲ୍‌ଭା କିଶୋରୀ ଭଳି ଲିପି ଏକ ତରଫା ଗପି ଚାଲିଥିଲା, 'ବାହାଘରର ଏଗାର ବର୍ଷ ପରେ ବି ମୁଁ ଏତେ ସୁନ୍ଦର ମଣିଷଟାର ଜୀବନଟାକୁ ରିକ୍ତତାରେ ହିଁ ଭରିଦେଇଛି, କେବଳ ଶୂନ୍ୟ, ଶୂନ୍ୟ, ମହାଶୂନ୍ୟ ଭିତରେ ଆମେ ଦୁହେଁ ଦୁହିଁଙ୍କୁ ଅଣ୍ଡାଳି ହେଉଛୁ । ମୋର ମନେ ହୁଏ ଅପା ! ସେ ଯେମିତି ମତେ ଦୟା କରୁଛନ୍ତି, ମୋ ବ୍ୟର୍ଥନାରୀତ୍ୱ ପ୍ରତି ଅତିମାତ୍ରାରେ ସହାନୁଭୂତିଶୀଳ ହୋଇ ପଡୁଛନ୍ତି, ଯାହା ମୋ ପାଇଁ ମରଣଠୁ ବି ବଳି ଯନ୍ତ୍ରଣା ଦାୟକ ।

ମୁଁ ଦରଦୀ ସ୍ୱରରେ ତାକୁ କହିଲି, 'ବିଜ୍ଞାନ ଏତେ ଆଗେଇଲାଣି ତମେ ଦୁହେଁ ଉଚ୍ଚ ଶିକ୍ଷିତ । କେହି କାହାକୁ ଊଣା ନୁହେଁ, ଭଲ ଡାକ୍ତରଙ୍କ ପରାମର୍ଶ ନେଉନ କାହିଁକି ?'

ସେ ଉଦାସ କଣ୍ଠରେ କହିଲା, "ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଡାକ୍ତର ଅଛନ୍ତି । ସେ ଆମ ଦୁହିଁଙ୍କୁ ପରୀକ୍ଷା କଲେ, ମୁଁ କାଳେ ସତ୍ୟର ସାମନା କରିପାରିବି ନାହିଁ ସେଥିପାଇଁ ଇଏ ଡାକ୍ତରୀ ରିପୋର୍ଟଟି ମୋ ପାଖରେ ଗୋପନ ରଖିଲେ, ସହଜେ ତ ଶାଶୁ ଶ୍ୱଶୁରଙ୍କ ପୀଡନରୁ ମୋର ମୁକ୍ତ ନାହିଁ । ରିପୋର୍ଟଟା ସେମାନଙ୍କ ଆଖିରେ ପଡିଗଲେ ମୋର ଯେ ବଞ୍ଚିବାଟା ଦୁର୍ବିସହ ହୋଇ ପଡିବ ଏକଥା ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ମୁଁ ଯେତେ ପଚାରିଲେ ବି ସେ ନିଷ୍ଠୁର ସତ୍ୟକୁ ମୋ ଆଗରେ ପ୍ରକାଶ କଲେ ନାହିଁ । ସେ ବିଷୟରେ ଅଧିକ ପ୍ରଶ୍ନ ନକରିବା ପାଇଁ ରାଣ ନିୟମ ପକେଇ ମୋ ଠୁଁ ପ୍ରତିଶ୍ରୁତି ନେଲେ ।"

ଦୁର୍ବଳାତାଟା ଯେ ମୋରି ଭିତରେ ରହିଛି, ଏ ଧାରଣା ମୋର ବଳବତ୍ତର ହୋଇଗଲା । ନିଜ ଭାଗ୍ୟକୁ ଅଭିଶାପ ଦେବା ବ୍ୟତୀତ ମୋ ପାଖରେ ଆଉ କଣ ଅଛି କୁହତ ?

ଶାଶୁ ଶ୍ୱଶୁର ବଂଶରକ୍ଷା ପାଇଁ ଚିନ୍ତିତ ହୋଇପଡନ୍ତି । ପୁଅର ଦ୍ୱିତୀୟ ବିବାହ ନେଇ ଚର୍ଚ୍ଚା ହୁଏ । ସବୁ ଉଦ୍ଦେଶ୍ୟମୂଳକ ଭାବରେ ମୋରି ଗୋଚରରେ ହୁଏ । କାରଣ ଅକାରଣରେ ଶାଶୁ ମୋ ଉପରେ ରବେଇ ଖବେଇ ହୁଅନ୍ତି । ଶ୍ୱଶୁର ଗର ଗର ହୁଅନ୍ତି । ଯେତେ ମନପ୍ରାଣ ଦେଇ ସେବା କଲେବି ତାଙ୍କୁ ସନ୍ତୁଷ୍ଟ କରିହୁଏ ନାହିଁ । ମୋ ଅପାରଗ ପଣିଆକୁ ଧିକ୍କାର କଲି । ମୁଁ ନିଷ୍ଫଳା ଶୂନ୍ୟଗର୍ଭା ସେମାନଙ୍କ କୋଳକୁ ନାତି କି ନାତୁଣୀଟିଏ ଦେଇପାରିଲି ନାହିଁ, ତାଙ୍କ ବଂଶ ରକ୍ଷା କରିପାରିଲି ନାହିଁ । କୋଉ ବଡପଣ ମୋର ଆଉ ରହିଲା ଯେ ସେମାନଙ୍କ କଥାକୁ ଧରି ବସିବି ? ତାଙ୍କ ଛି-ଛାକର, ତୁକାର ଭାଷାକୁ ଛଳ କରିବି ?"

ମୁଁ ଅନ୍ୟ ମନସ୍କ ହୋଇ ପଡ଼ିଲି, ଭାବୁଥିଲି କଲେଜ ବେଳର କଥା । ନିଜପ୍ରତି ହେଉ କି ଅନ୍ୟ କାହାପ୍ରତି ହେଉ ଟିକିଏ ଅନ୍ୟାୟ ସେ ବରଦାସ୍ତ କରିପାରୁ ନଥିଲା । ତା ରୁମ୍‌ମେଟ୍ ଦୀପାଳୀ ସିଂ ପ୍ରତି ଫିଜିକ୍ସ ସାର୍‌ଙ୍କ ଲାବୋରୋଟେରୀରେ ଅସୌଜନ୍ୟ ଆଚରଣ ବିରୁଦ୍ଧରେ ଯେଉଁ ଦୃଢ଼ ପ୍ରତିବାଦ ହେଇଥିଲା, ତାର ନେତୃତ୍ୱ ନେଇଥିଲା ଲିପି । ତାରି ଚାପ ଆଗରେ ମୁଣ୍ଡ ନୁଆଇଁ ଅଧ୍ୟାପକ ଶକ୍ତି ପଟ୍ଟନାୟକ ସମଗ୍ର ଛାତ୍ର ସମାଜ ଆଗରେ ଦୀପାଳିକୁ କ୍ଷମା ପ୍ରାର୍ଥନା କରିଥିଲେ । ସେହି ଲିପି ଆଜି ପଳ ପଳ କରି ପିଇଯାଉଛି ଅନ୍ୟାୟ ଅତ୍ୟାଚାରର ବିଷ । ଅନ୍ୟର ଘୃଣା, ଲାଞ୍ଛନା, ଦୟା ଓ ଦାକ୍ଷିଣ୍ୟରେ ସନ୍ତୁଳିତ ହୋଇ ବଞ୍ଚିବାର ରାହା ଖୋଜୁଛି । ଅତ୍ୟନ୍ତ ହତଶ୍ରୀ ହୋଇ ପଡିଛି ଝିଅଟା । ତା ବ୍ୟକ୍ତିତ୍ୱର ତେଜମୟ ଛାପ ଆଉ ନାହିଁ । କେବଳ ତାର ଦୁଇ ସୁନ୍ଦର ଉଜ୍ଜ୍ୱଳ ଚକ୍ଷୁ ଯାହା ତା ଲୁପ୍ତ ବ୍ୟକ୍ତିତ୍ୱର ଚିହ୍ନ ଟିକେ ସାଇତି ରଖିଛି ।

ଲିପି ସୋଫା ଉପରୁ ଉଠୁଉଠୁ କହିଲା, ଅଯଥାରେ ତମ ମନରେ କଷ୍ଟ ଦେଲି ଅପା । ଏ ଛାତି ଉପରେ ଖଣ୍ଡିଏ ମହଣ ପଥର ମୁଁ ଲଦି ଦେଇଛି । ବ୍ୟକ୍ତିଗତ ଜୀବନର ବ୍ୟର୍ଥତା ସମସ୍ତଙ୍କ ଆଗରେ କହିହୁଏ ନାହିଁ । କଲେଜରେ ପଢ଼ିଲାବେଳେ ତମେ ମତେ

ଖୁବ୍ ଆପଣାର ଲାଗୁଥିଲ । ଏବେ ପନ୍ଦରବର୍ଷ ପରେ ତୁମକୁ ଦେଖି ସେ ଆପଣା ପଣ ଆହୁରି ଗଭୀର ହୋଇଗଲା ଭଳି ମୁଁ ଅନୁଭବ କଲି । ସେଇ ଅଧିକାରରେ କି କଣ ମୋ ହୃଦୟର କେଇ ପୃଷ୍ଠା ଆପେ ଆପେ ଖୋଲି ହେଇଗଲା, ଉଗାଳି ହେଇ ପଡ଼ିଲା ପୁଞ୍ଜିଭୂତ ବେଦନାରୁ କେଇ ଅଧ୍ୟାୟ । କିଛି ଖରାପ ଭାବିବନି ଅପା ।”

ଲିପି ଚାଲିଗଲା ପରେ ମୁଁ ଦରଜାଟାକୁ ଆଉଜେଇ ଆଣିଲି । ବହୁତ କ୍ଳାନ୍ତ ଲାଗୁଥିଲା । ସକଳ ସମାଜିକ ସିଷ୍ଟମ ଉପରୁ ମୋ ଶ୍ରଦ୍ଧା କମି ଆସୁଥିଲା । ନାରୀକୁ କଣ ସମାଜ ସର୍ବଂସହା ଆଖ୍ୟା ଦେଇଛି ଏଇଥି ପାଇଁ ଯେ ସୃଷ୍ଟିର ସକଳ ଗଠନ ମୂଳକ କାର୍ଯ୍ୟ ସେ ନିର୍ବାହ କରିବ ଆଉ ସେଥିରେ ଏତେ ଟିକିଏ ବ୍ୟର୍ଥତାକୁ ବି ସମାଜ କ୍ଷମା ଦେବନାହିଁ ? ଦରଦୀ ଭାବ ଫୁଟାଇବ ନାହିଁ ? ତା ଅସଫଳତା ପାଇଁ କେବଳ ନିନ୍ଦା ଅପବାଦ ଅବଜ୍ଞା ଓ ତାଚ୍ଛିଲ୍ୟ ତାର ପ୍ରାପ୍ୟ । କେତେ ଦିନ ଆଉ ଏମିତି ଚାଲିଥିବ ? ମନେ ମନେ ଭଗବାନଙ୍କ ପ୍ରତି ବି ବିଦ୍ରୋହୀ ହୋଇ ଉଠିଲି । ଏତେ ବଡ ଦାୟିତ୍ୱର ବୋଝ ଉଠାଇବା ପାଇଁ କେବଳ ନାରୀଙ୍କୁ ନିର୍ଦ୍ଧାରଣ କଲେ କାହିଁକି ? ବନ୍ଧ୍ୟା ପୁରୁଷଟିଏ ସମାଜରେ ସେତିକି ଲାଞ୍ଛିତ ହୁଏନାହିଁ, ଯେତିକି ହୁଏ ବନ୍ଧ୍ୟା ନାରୀ । ଯେପରିକି ଏ ପୃଥିବୀକୁ ସୃଷ୍ଟି ସଂପଦରେ ଭରିଦେବା ପାଇଁ ନାରୀ ଚୁକ୍ତିବଦ୍ଧ ହୋଇ ତା ବୁକୁରେ ପାଦ ଦେଇଛି ।

ଲିପି ଭଳି ଦୃଢ଼ମନା ଉଚ୍ଚ ଶିକ୍ଷିତା ଝିଅଟା ଯେତେବେଳେ ଏ ପାରଂପରିକ ବିଶ୍ୱାସରୁ ମୁକ୍ତ ହୋଇପାରୁନି ସାଧାରଣ ନାରୀମାନଙ୍କ କଥା କଣ ଚିନ୍ତା କରାଯାଇପାରେ ?

ଏମିତି ଭାବୁ ଭାବୁ କେତେବେଳେ ମତେ ନିଦ୍ରା ଆସିଯାଇଛି ଜାଣିନାହିଁ । ସୁବ୍ରତଙ୍କ କଣ୍ଠସ୍ୱରରେ ମୋର ଚେତନା ଫେରି ଆସିଲା । ସେ ପାଟିକରି କହୁଥିଲେ ।

“ଦେଖତ କିଏ ଆସିଛି ?”

ମୁଁ ବେଡରୁମ୍‌ରୁ ବାହାରି ଆସିଲି । ସୁବ୍ରତଙ୍କ ଘନିଷ୍ଠ ବନ୍ଧୁ ପ୍ରବୀଣ, ବେଶ୍ ହସଖୁସି ମିଜାଜର, ଠୋ ଠୋ କଥା କୁହନ୍ତି । କଥା ମଝିରେ ହୋ ହୋ ହେଇ ହସନ୍ତି । ଲିପିର ଦୁଃଖରେ ଭାରାକ୍ରାନ୍ତ ମନଟାକୁ ପ୍ରବୀଣ ବାବୁଙ୍କ ଉପସ୍ଥିତି କିଛି ପରିମାଣରେ ହାଲୁକା କରିବ ଭାବି ମନେ ମନେ ଆଶ୍ୱସ୍ତ ହେଲି । ସୁବ୍ରତ କହିଲେ-ଯାଅ ଏଥର ବନ୍ଧୁ ଚର୍ଚ୍ଚାର ଆୟୋଜନ କର । ମୁଁ ଅଳ୍ପ ହସି ପ୍ରବୀଣ ବାବୁଙ୍କୁ ନିରବରେ ଅଭିବାଦନ ଜଣାଇ ରୋଷେଇ ଘର ଆଡେ ମୁହେଁଇଲି ।

ଗରମ ଗରମ ପକୁଡି ଦୁଇ ପ୍ଲେଟ ଦୁଇଜଣଙ୍କ ପାଇଁ ବାଢ଼ି ଦେଇ ଚା କରିବା ଉଦ୍ଦେଶ୍ୟରେ ରୋଷେଇ ଘରକୁ ଯିବାକୁ ଉଦ୍ୟତ ହେଉ ହେଉ ଦୁଇ ବନ୍ଧୁଙ୍କ ଆଳାପର କିଛି ଅଂଶ ମୋତେ ସ୍ତବ୍ଧ କରିଦେଲା ।

ପ୍ରବୀଣ ବାବୁ କହୁଥିଲେ, “ବହୁ ଦିନପରେ ଆଜି ଶଶୀକାନ୍ତ ସହ ଦେଖାଦେଲା, ମୁଁ ଭାବୁଥିଲି ଇଡ଼ିଅଟ୍‌ଟା ବାହାହେବନି, ତା ଭାଗ୍ୟରେ ପୁଣି ଏତେ ସୁନ୍ଦର ସ୍ତ୍ରୀ, ଲିପି

ପଟ୍ଟନାୟକ ମ ! ଭାଉଜଙ୍କ କଲେଜରେ ପିଜିକ୍ସ ଅଧ୍ୟାପିକା । ଦୁହେଁ ବଦଳି ହୋଇ ଆସିଛନ୍ତି ଏବେ ।"

ସୁବ୍ରତ କହୁଥିଲେ, "ଆଉ ତା ପିଲା ଛୁଆ ?"

"ହୁଃ-ପିଲାଛୁଆ ! ଶଳା ହିପୋକ୍ରେଟ୍ କୋଉଠିକାର ।"

ଆଚ୍ଛା ତା ପିଲାଛୁଆଙ୍କୁ ନେଇ ତୋର କଣ ପ୍ରୋବ୍ଲେମ୍ ଶୁଣେ ।" ସୁବ୍ରତଙ୍କ କଣ୍ଠରେ ରସିକତା ।

ଗୋଟିଏ ଅନନ୍ତ ରହସ୍ୟ ଓ ସାଂଘାତିକ ସତ୍ୟଟିଏ ପ୍ରକାଶ କରିବା ଶୈଳୀରେ ପ୍ରବୀଣ କହିଲେ- ହଷ୍ଟେଲ ଛାଡିଲାପରେ ହାଇଡ୍ରୋସିଲ୍ ପ୍ରୋବ୍ଲେମ୍ ଦେଖାଦେଇଥିଲା ଶଶୀକାନ୍ତର । ସେଥିପାଇଁ ସିରିଅସ୍ ଅପରେସନ୍‌ଟିଏ ବି କରିବାକୁ ପଡିଥିଲା । କଣ ତ୍ରୁଟି ରହିଗଲା ସେ ଅପରେସନ୍‌ରେ କେଜାଣି, ସବୁଦିନ ପାଇଁ ସେ ସନ୍ତାନ ଉତ୍ପାଦନ କ୍ଷମତା ହରେଇ ଦେଇଥିଲା ବୋଲି ଡାକ୍ତର ରିପୋର୍ଟ ଦେଇଥିଲେ ।"

"ଏକଥା ସେ ନିଜେ ଜାଣିଛନ୍ତି ?" ବ୍ୟାକୁଳ କଣ୍ଠରେ ମୁଁ କହିଲି ।

ସେ ଜାଣିଛି ତା ବାପ ମାଆ ସମସ୍ତେ ଜାଣିଛନ୍ତି । ତଥାପି କେତେ ସୁନ୍ଦରୀ ଓ ଶିକ୍ଷିତା ଝିଅଟାର ଜୀବନ କେମିତି ନଷ୍ଟ କରିଦେଲେ ଶଳା ମାନବିକତାହୀନ ପିଶାଚଗୁଡାକ । ଏମାନଙ୍କୁ କେମିତି ଧର୍ମ ସହିଛି କେଜାଣି ?"

ପ୍ରବୀଣ ବାବୁ ଆହୁରି କଣ କଣ କହୁଥିଲେ, ମୋ କାନରେ କିନ୍ତୁ ଆଉ କିଛି ପଶୁନଥିଲା । ମୋ ଆଖି ଆଗରେ କେବଳ ଭାସିଉଠୁଥିଲା ଲିପିର ସୁନ୍ଦର ଆଖି କୋଣରେ ଉବୁଟୁବୁ ହେଉଥିବା ଦୁଇ ବିନ୍ଦୁ ଲୁହ, କେମିତି ତାର ଲହୁଣିଭଳି ଚିକ୍କଣ ଦୁଇ ଗାଲ ଉପରଦେଇ ଗଡିଆସୁଛି । ନାରୀର ସ୍ପର୍ଶକାତର ବିନ୍ଦୁରେ ଆଘାତ କରି ଜୀବନସାରା ତାକୁ ଏମିତି ମୁକ ନିର୍ବେଦ ଓ ସନ୍ତ୍ରସ୍ତ କରି ରଖିବାର ମାନସିକତା କେବଳ ନପୁଂସକ କାପୁରୁଷ ପାଖରେ ହିଁ ସମ୍ଭବ । ସତ୍ୟ ଓ ସାହସର ଛୁରୀକାରେ ଏ ମାନସିକତାକୁ କ୍ଷତାକ୍ତ କରିବାକୁ ହେବ । ପରିଣତି ଯେତେ ଭୟାଭୟ ହେଉ ପଛେ । ମୋ ଭିତରେ କେମିତି ଏକ ଅଦୃଶ୍ୟ ଶକ୍ତିର ସଞ୍ଚାର ହେବା ଭଳି ମୁଁ ଅସ୍ତବ୍ୟସ୍ତ ହୋଇପଡିଲି । ସେହି ଶକ୍ତିର ପ୍ରଭାବରେ ଯନ୍ତ୍ରଭଳି ମୁଁ ଯେମିତି ଠେଲି ହେଇଗଲି ଫୋନ୍ ପାଖକୁ, କିଛି ଚିନ୍ତା କରିବା ପୂର୍ବରୁ ମୁଁ ରିସିଭର ଉଠେଇ ଲିପି ନମ୍ବରଟା ଡାଏଲ କରି କହିଲି,

'ଲିପି । ଯେତେ ଶୀଘ୍ର ପାରୁ ମତେ ଦେଖା କରିବୁ । ତୋ ସହ ଜରୁରୀ କଥାବାର୍ତ୍ତା ଅଛି ।'

ସୁବ୍ରତ ଓ ପ୍ରବୀଣ ଏକ ସ୍ୱରରେ ଆତଙ୍କିତ ହୋଇ କହି ଉଠିଲେ, "ଏ କଣ କରୁଛ ତମେ ।"



# ସହୀଦ

ରତ୍ନାକରର ନିଷ୍ପତ୍ତି ଅଟଳ ଥିଲା । ପାଞ୍ଚମାଣିଆରେ ସେ କୂଅଟିଏ ଖୋଳିବ । ସେଥିପାଇଁ ବ୍ୟାଙ୍କ୍ ବାବୁମାନଙ୍କୁ କେତେ ନେହୁରା ନିଉଛାଳି ହେଇ ଋଣ ମଞ୍ଜୁରୀ କରେଇ ଆଣିଛି । କୂଅଟିଏ ହେଇଗଲେ ବନ୍ଧ୍ୟା ଅନୁର୍ବର ପରିତ୍ୟକ୍ତ ଭୂଇଁ ସୁନାଥାଳି ପାଲଟିଯିବ । ଡାଲୁ ଓ ଢିପ ଜମିଟା । ବର୍ଷାଦିନର ଶାରଦଧାନ ଦିଟା ଆଠଣା ବି ଅମଳ ହୋଇପାରେ ନାହିଁ । ଯେଉଁ ବର୍ଷ ବର୍ଷାର ପ୍ରକୋପ ଟିକେ ଊଣା, ଜମିଟା ଜାଣ ପୂରାପୂରି ପଡ଼ିଆ । ଖାଲି ବିଧିରକ୍ଷାକୁ ଯାହା ତଳି ଦୁଇଟା ରୁଆ ହୋଇଥାଏ । ପାଞ୍ଚମାଣ ପର୍ଯ୍ୟନ୍ତ ଲମ୍ବିଛି ଜମିଟା । ଜଳ ସେଚନର ସୁବିଧା ହୋଇଗଲେ ସେଇ ଜମି ହିଁ ପାଞ୍ଚପ୍ରାଣୀ କୁଟୁମ୍ବ ପୋଷିବ ।

ଅତିଷ୍ଠ ହୋଇ ପଡ଼ିଲାଣି ରତ୍ନାକର । ଘରେ ବୁଢ଼ା ବାପମାଆ । ପାଠଶାଠ ନଥିବା ବେକାର ଭାଇ, ବିବାହ ବୟସ ଅତିକ୍ରାନ୍ତ କରୁଥିବା ଭଉଣୀ ପୁଣି ତା'ର ନିଜ ସଂସାର । ସମସ୍ତଙ୍କର ଦାୟିତ୍ୱ ମୁଣ୍ଡେଇବାକୁ ହୁଏ । ସେତିକି ନୁହେଁ, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ, ସବୁଠି ସେ ଶୁଣେ ଦାରିଦ୍ର୍ୟର ଏକ ଉତ୍ପୀଡକ ପଦଧ୍ୱନି । ତା ସାମର୍ଥ୍ୟ ଭିତରେ ଏ ସବୁକୁ ସାମ୍ନା କରି କରି ସେ ନୟାନ୍ତ ହୋଇ ପଡ଼ିଲାଣି । ଏଣିକି ଆଉ ଦରଦୀ ଭାବ ଆସେ ନାହିଁ ତାର, ବରଂ ବିରକ୍ତ ହୁଏ । ଏ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ମାନସିକତା ହିଁ ସେୟା, ଜଣେ କେହି ଅକ୍ଳାନ୍ତ ପରିଶ୍ରମ କରି ଦାରିଦ୍ର୍ୟର କଷାଘାତରୁ ମୁକୁଳିବାକୁ ଚେଷ୍ଟା କଲେ ଅନ୍ୟମାନେ ପରାଙ୍ଗପୁଷ୍ଟ ଭଳି ଲଦିହେଇ ପଡ଼ନ୍ତି ତା ପିଠିରେ । ସମସ୍ତଙ୍କୁ ସମ୍ଭାଳିବାକୁ ହୁଏ । ସମସ୍ତଙ୍କ ପାଇଁ ଭାବିବାକୁ ହୁଏ । ନ କଲେ ନିସ୍ତାର ନାହିଁ । ନିଜସ୍ୱ ଇଚ୍ଛା ଅନିଚ୍ଛାର ପ୍ରଶ୍ନ ନାହିଁ ଏଠି ।

ତଥାପି ରତ୍ନାକର ନିଜ ପରିବାରରେ କାହାକୁ ଅସୁଖୀ କରେ ନାହିଁ । ତୃତୀୟ ଶ୍ରେଣୀ କର୍ମଚାରୀର ସ୍ୱଳ୍ପ ବେତନ ସତ୍ତ୍ୱେ ସେ ପାରୁ ପର୍ଯ୍ୟନ୍ତ ସମସ୍ତଙ୍କ ଅଳିଅର୍ଦ୍ଦଳିକୁ ସମ୍ମାନ ଦିଏ । ପତ୍ନୀ ସୁଚିତ୍ରା ଉପରେ ଚାପ ପକେଇ ତା ଗହଣା ସହ ତା ବାପଘରୁ ଆଣିଥିବା କିଛି ସରଞ୍ଜାମ ଯୌତୁକ ଦେଇ ପ୍ରଥମ ଭଉଣୀକୁ ଶାଶୁଘର ପଠେଇଥିଲା । ସେଥିପାଇଁ କମ୍ ଦୁର୍ମୂଲ୍ୟ ଦେବାପାଇଁ ପଡ଼ିନଥିଲା ତାକୁ । ସୁଚିତ୍ରା ସହ ତାର ସଂପର୍କ ସ୍ୱାଭାବିକ ହେବା ପାଇଁ ପ୍ରାୟ ଗୋଟାଏ ବର୍ଷ ଲାଗିଯାଇଥିଲା । ସୁଚିତ୍ରା ବି ଧୀରେ ଧୀରେ ରତ୍ନାକର ଓ ତା ପରିବାରର ଅଦଉତି ସହିବାରେ ଅଭ୍ୟସ୍ତ ହୋଇ ଗଲାଣି । କେତେବେଳେ ଅବ୍ୟକ୍ତ ଅଭିମାନରେ ତ କେତେବେଳେ ନିରବ ବିଦ୍ରୋହରେ ।

ସୁଚିତ୍ରା ଉଦାରଶୀଳା । ସ୍ୱଳ୍ପ ବେତନ ଭୋଗୀ ସ୍ୱାମୀର ଅସହାୟତାକୁ ସେ ବୁଝେ । ସେଥିପାଇଁ ତା ସ୍ୱାମୀପଣର ଅଭାବବୋଧକୁ ସେ ଉପେକ୍ଷା କରିଦିଏ । ସଂକୁଚିତ ହୋଇଯାଏ ରତ୍ନାକର । ଫୁଟାଡଙ୍ଗାର ନାଉରୀଟିଏ ଭଳି ବହୁ ହିପାଜତରେ ସେ ତା ସଂସାର ନଉକାକୁ କୂଳକୁ ବାହିବାକୁ ଚେଷ୍ଟା କରେ, ପହିଲା ତାରିଖରୁ ଦରମାଟା ବଣ୍ଟା ହୋଇଯାଏ । ଅଧା ଯାଏ ଗାଁକୁ । ବାକି ଅଧକରୁ ଧାର ଉଦ୍ଧାର ସୁଝିସାରି ବଳକାତକ ବିକଳ ହସଟିଏ ହସି ସୁଚିତ୍ରା ହାତକୁ ବଢେଇଦିଏ । ସେଇ ସେତକରେ ଚଳେ ତା ନିଜ ସଂସାର । କୋଉମାସରେ ପର୍ବପର୍ବାଣୀ, ବନ୍ଧୁବାନ୍ଧବ ବାହାବ୍ରତ ପାଇଁ ଭାର ବେଭାର ପଡ଼ିଲା ତ ମାସ ଅଧାରୁ ପୁଣି ହାତ ଉଧାରି । ପେଷି ହୋଇ ଗଲାଣି ରତ୍ନାକର । ଅଫିସ୍‌ରୁ ଫେରି ଦୁଇଚାରିଟା ପିଲାଙ୍କୁ ଧରି ଟିଉସନ୍‌ରେ ବସେ । ସବୁ କିନ୍ତୁ ଦାରିଦ୍ର୍ୟର କରାଳ ମୁଖ ବ୍ୟାଦାନ ଭିତରେ ଆତ୍ମସତ୍ତା ହରେଇ ବସନ୍ତି ।

ରତ୍ନାକର ଏଇ ଥର ଖୁବ୍ ସିରିଅସ୍ ହୋଇଛି । ସାନଭାଇଟାକୁ କୋଉଠି କୂଳରେ ନ ଲଗାଇଲେ ନହୁଏ । ପାଠଶାଠ ତା ଦ୍ୱାରା ହେଲା ନାହିଁ । ମେଟ୍ରିକଟାଏ ବି ପାସ୍ କରିପାରିଲା ନାହିଁ । କିଛି ହାତଗୁଞ୍ଜା ଦେଇ ଆଇ.ଟି.ଆଇ. ଟ୍ରେନିଂଟା ତାକୁ କରେଇ ଦେଇଥିଲା ଯେ ସିଏ ବି କିଛି କାମ ଦେଲା ନାହିଁ । ସେ ଏବେ ଜିଗର ଲଗେଇଛି, ପାଞ୍ଚମାଣିଆରେ ସ୍ଥାୟୀ ଜଳସେଚନ କରିଦେଲେ ବଡ଼ଭାଇର ବୋଝ ନିଜ ମୁଣ୍ଡକୁ ନେବ ।

ରତ୍ନାକର ସ୍ୱପ୍ନ ଦେଖୁଥିଲା ।

ପାଞ୍ଚମାଣିଆ ମଝିରେ ପଥର କୂଅଟିଏ । ସେଥିରେ ହାବୁକା ହାବୁକା ପାଣି । କାଚ କେନ୍ଦୁ ପରି ନିର୍ମଳ । ମୁହଁର ଛବି ଦିଶିଯାଉଛି । ମଟରରେ ପାଣି ଉଠୁଛି । ଭିଜେଇ ଦଉଚି ପାଞ୍ଚମାଣିଆର ଛାତି । ସେଠି ସୁନା ଫଳୁଚି । ସେ ଆଉ ବନ୍ଧ୍ୟା ଅନୁର୍ବର ଅପବାଦରେ ଅପନିନ୍ଦିତ ହେଉ ନାହିଁ । ଜହ୍ନି, କାକୁଡି, କୋବି, ଟମାଟୋ, ଗାଜର, ବାଇଗଣ ମୂଳା, ବୋଇତି କଖାରୁ ଆଦିଭଳି କି ଭଳି ପନି ପରିବା, ସାନ ଭାଇ ସୁଧାକର ସେ ସବୁ ତୋଳି ମୂଲିଆ ଲଗେଇ ବଜାରକୁ ଛାଡୁଛି । ସନ୍ଧ୍ୟାବେଳକୁ କଞ୍ଚାପଇସା । ସୁଧାଟା ଆଉ ହତାଶିଆ ଦିଶୁନାହିଁ । ତା ଦେହରେ ଖୁନ୍ଦି ହେଉଛି ଅମାପ କର୍ମପ୍ରେରଣା । ତା ସ୍ୱପ୍ନିଳ ଆଖିରେ ଗଭୀର ଆତ୍ମପ୍ରତ୍ୟୟ । ବାପା ମାଆ ବି ବାର୍ଦ୍ଧକ୍ୟର ନିଷ୍କର୍ମା ପଣକୁ ଆଉ ଅଭିସମ୍ପାତ ଦେଉ ନାହାନ୍ତି । ବଗିଚାଟିର ଗୋଟିଏ କୋଣକୁ ବରଡା ତାଟିରେ ଛୋଟିଆ ପଲାଟିଏ ହୋଇଛି । ସେଇଠି ଅଫିମ ଖିଆ ସାଙ୍ଗକୁ ଗୀତା ଭାଗବତ ପୁରାଣ ଆଦି ପଢାଚାଲିଛି ବାପାଙ୍କର । ବଗିଚାଟିକୁ ଚୋରିହାରି ଓ ବୁଲା ଗାଈ ଗୋରୁଙ୍କ ମୁହଁରୁ ରକ୍ଷା କରିବା ଦାୟିତ୍ୱ ବି ସେ ତୁଲେଇ ନେଇଛନ୍ତି । ଦରକାର ପଡିଲେ ବୋଉ ଓ ସାନ ଭଉଣୀ ବି ସମୟ ଦେଉଛନ୍ତି ସେଠି । ସମସ୍ତଙ୍କ ମୁହଁରେ ହସର ପସରା ମେଲି ହେଇ ପଡ଼ିଛି ।

ଏତେ ଆବେଗ ଓ ଉଦ୍‌ବେଗକୁ ସେ ନିୟନ୍ତ୍ରଣରେ ରଖିପାରୁ ନଥିଲା । ଆଗକୁ ଅକ୍ଷିତୃତୀୟା, ଛୁଟିଦିନ । ତା ସହ ଆଉ କେତେ ଦିନ ଛୁଟିପାଇଁ ଦରଖାସ୍ତଟିଏ ଅଫିସ୍‌ରେ ଦେଇ ସେ ସପରିବାରେ ଗାଁ ଅଭିମୁଖେ ଯାତ୍ରା କଲା ।

ଘରେ ପହଞ୍ଚି ମୁରବୀ ସୁଲଭ ସ୍ୱରରେ ସୁଧାକରକୁ କହିଲା – କାଲି ଅକ୍ଷିତୃତୀୟା । ଭଲ ଦିନଟା । ସକାଳୁ ସକାଳୁ ଯାଇ ପୁରୋହିତକୁ ଡାକି ଆଣିବୁ । ଭୂମି ପୂଜନଟା ସାରିଦବା । ତେଣିକି ବର୍ଷା ପଡ଼ିଯିବ । ଏଇ ଖରା ଖରା ଯେମିତି କୂଅ ଖୋଳାଟା ସରିଯାଏ ।

ରୋଷେଇ ଘରୁ ବୋଉ ରତ୍ନାକରକୁ ଶୁଣେଇ କହିଲା-

ଏ ନିଉଛୁଣା ଗାଁଟାରେ ତ କାଳକ ଜଳକଷ୍ଟ । କାହିଁକି ତୁ ସେ ଅଡୁଆରେ ପଶୁଛୁ କିରେ ? କୂଅ ଖୋଳିଲେ ଏଠି ପାଣି ବାହାରିବ ନାହିଁ ବୋଲି କୋଉ ଯୁଗରେ କିଏ ଜଣେ ସାଧୁ ସନ୍ନ୍ୟାସୀ ଏ ଗାଁକୁ ଅଭିଶାପ ଦେଇଥିଲେ ବୋଲି ବଡ଼ବଡ଼ିଆ କହନ୍ତି । କାହିଁକି ପଇସାଗୁଡା ଅବ୍ୟାଦରେ ଖର୍ଚ୍ଚ କରିବୁ ? ଠାକୁରେ ନ କରନ୍ତୁ, ଯଦି ପାଣି ନ ବାହାରିଲା ତ ମୁଠାଏ ଟଙ୍କା ପାଣିରେ ପଡ଼ିଯିବ ।

ରତ୍ନାକର ହସିଲା । ସେମିତି ହସୁ ହସୁ କହିଲା-ପାଣି ଯଦି ନ ବାହାରିବ ଟଙ୍କା ଗୁଡ଼ାକ ପାଣିରେ କେମିତି ପଡ଼ିଯିବ ଲୋ ବୋଉ ! ତା ପରେ ସେ ଟିକେ ସମୟ ରହି ଦାର୍ଶନିକ ସୁଲଭ କଣ୍ଠରେ କହିଲା- ଏଇ ପୁରୁଣା ବିଶ୍ୱାସ ଗୁଡ଼ାକ ମଣିଷର ଆଗକୁ ବଢ଼ିବାର ରାସ୍ତାକୁ ଅବରୋଧ କରିଦିଏ । ଦେଖିବୁ ବୋଉ । ତୋ ପୁଅ କେମିତି ଏ ଗାଁ ଲୋକଙ୍କୁ ନୂଆରାସ୍ତା ଦେଖେଇବ । ସେଇ ଅସିଆ କାଳର ମସିଆ କଥାକୁ ଧରିନେଇ ଏ ଲୋକମାନେ କଷ୍ଟ ପାଉଛନ୍ତି । ଦେଖିବୁ ସେମାନେ ଆଉ କଷ୍ଟ ଭୋଗିବେ ନାହିଁ । ଏ ଗାଁରେ ଜଳ ନୁହେଁ ଲୋ ଅମୃତ ଝରିବ, ଅମୃତ । ଏ ମାଟିରେ ସୁନା ଫଳିବ ।

ରତ୍ନାକରର ଆବୁରା ଜାବୁରା କଥା ଅଧେ ବୁଝିଲା, ଅଧେ ବୁଝିପାରିଲାନି ବୋଉ ।

ଚା' କପ୍‌ଟା ତା ହାତକୁ ବଢେଇ ଦେଉ ଦେଉ କହିଲା, ହଉ ତୋରି କଥା ହେଉ । ଏ ଗାଁରେ ଅମୃତ ବରଷୁ ।

ନିର୍ଜଳା ଗାଁକୁ ସଜଳା କରିବା ପାଇଁ ଇୟେଥିଲା ରତ୍ନାକରର ପ୍ରାଥମିକ ଅଭିଯାନ । ପୁରୋହିତ ଏକ ଯୁଗାନ୍ତକାରୀ କାର୍ଯ୍ୟ କରିବାର ବାହାଦୂରୀ ନେଉଥିଲେ । କେତେ ଦେବ ଦେବୀ ଚଣ୍ଡୀ ଚାମୁଣ୍ଡା ଶକ୍ତି ଅପଶକ୍ତି ମାନଙ୍କୁ ସନ୍ତୁଷ୍ଟ କରିବାକୁ ହେବ । ସେ ଦାବୀ କଲେ ତାଙ୍କ ପ୍ରାପ୍ୟରୁ ଟିକେ ଅଧିକ ପାଉଣା । ରତ୍ନାକର ତାଙ୍କୁ ଅସନ୍ତୁଷ୍ଟ କରିବାକୁ ଚାହିଁଲା ନାହିଁ । ପୁରୋହିତ ଯଥାରୀତି ତାଙ୍କ ଦାୟିତ୍ୱ ସଂପନ୍ନ କଲେ ।

କୂଅ ଖୋଳା ଆରମ୍ଭ ହେଲା । ସମସ୍ତଙ୍କ ମନରେ ଅଦମ୍ୟ ଉତ୍ସାହ । ରତ୍ନାକର ତ ଖାଇବା ପିଇବା ଭୁଲିଗଲା । ଗଦା ହେଇଗଲା କୁଢ କୁଢ ମାଟି । କେତେବେଳେ ଧୂଳିଆ ତ କେତେବେଳେ ମଟାଳ । କେତେବେଳେ ରକ୍ତ ପରି ଲାଲ୍ ତ କେତେବେଳେ କିଟି କିଟି କଳା । କେତେବେଳେ ବାଲିଆ ତ କେତେ ବେଳେ ପୁଣି ପଙ୍କୁଆ । କେତେବେଳେ ପଥୁରିଆ । ଗେଙ୍ଗୁଟି ପଥର ଭଳି । ମାଟିର ପୁଣି ଏତେ ରଙ୍ଗ ଥାଏ । ଏତେ ମହକ ଥାଏ ? ତା ସାଙ୍ଗରେ ଏକାକାର ହେବାରେ ମାଦକତା ଥାଏ ? ଅଭିଭୂତ ହୋଇ ପଡୁଥିଲା ରତ୍ନାକର ।

ପର୍ବତ ପ୍ରମାଣେ ଗଦା ହୋଇଗଲା ଭଳିକି ଭଳି ମାଟି । କୂଅର ଗଭୀରତା ବଢ଼ିବା ସଙ୍ଗେ ସଙ୍ଗେ ରତ୍ନାକର ମନରେ ଆଶଙ୍କା ଉଦ୍‌ବେଗ ଓ ଉତ୍‌କଣ୍ଠା ବି ବଢିଚାଲିଲା । କାହିଁ । କାହିଁ ତାର ସ୍ୱପ୍ନ । ତାର ବହୁ ବାଞ୍ଛିତ କଳ୍ପନା ? କେତେ ଅଥଳରେ ଅଛି ସିଏ ? ତାର ଧୈର୍ଯ୍ୟର ବାଲି ବନ୍ଧ ଧୀରେ ଧୀରେ ଭୁଷୁଡିବାକୁ ଆରମ୍ଭ କରୁଥିଲା । ସତରେ କଣ ଏ ପ୍ରତୀକ୍ଷାର ଅନ୍ତ ନାହିଁ ?

କ୍ଲାନ୍ତ ହୋଇପଡ଼ିଲେଣି କୁଲି ମଜୁରିଆ । ସେମାନଙ୍କ ମନର ବଳ ବି ତୁଟିଲାଣି । କେତେ ଏମିତି ଖୋଳି ଚାଲିଥିବେ ? ମିଳୁ ପଛେ ମଜୁରୀ । ଏମିତି ନିଷ୍ଫଳା କାର୍ଯ୍ୟରେ ପ୍ରେରଣା କାହିଁ ? ଉନ୍ମାଦନା କାହିଁ ?

କୁଲି ମାନଙ୍କ ଭିତରେ ଯିଏ ସବୁଠୁ ବଡ଼, ବୁଦ୍ଧି ଅକଲରେ, ବୟସରେ, ସିଏ ହତାଶ ହେଇ କହିଲା-

କେତେ ଆଉ ଖୋଳି ଚାଲିଥିବା ବାବୁ ? ପାଣିର ଚିହ୍ନବର୍ଣ୍ଣ ତ ମିଳୁନି, କୋଉ ଭରସାରେ ଆହୁରି ବେଜାଏ କଷ୍ଟ କରିବା ?

ନିଜ ଆବେଗକୁ ଗୋପନ ରଖି ସ୍ୱାଭାବିକ ଢଙ୍ଗରେ ସେମାନଙ୍କୁ ଉତ୍ସାହ ଦେଇ ରତ୍ନାକର କହିଲା- "ହଁ-ହଁ-ଆସିବ-ଆସିବ । ପାଣି ନିଶ୍ଚୟ ଆସିବ ।"

ଦେଖୁନ, ମାଟି ଗୁଡାକ କେମିତି ଧୀରେ ଧୀରେ ହାଲ୍‌କା ହେଇ ଆସିଲାଣି । ବତୁରା ବତୁରା ଲାଗିଲାଣି । ଆଉ ଫୁଟେ ଦୁଇ ଫୁଟର କଥା ।

ଏଥର କୂଅରୁ ଖାଲି ବାହାରୁ ଥିଲା କୁଢ କୁଢ ବାଲି । ରତ୍ନାକରର ଆଶା ଭରସା ଆହୁରି ତେଜି ଉଠିଲା । ବାଲିର ସ୍ତର ଆସିଲେ ପାଣିର ଝର ଫିଟେ ।

ସୂର୍ଯ୍ୟଦେବତା ଢଳିଲେଣି । ପଶୁପକ୍ଷୀ ଯିଏ ଯାହାର ବସାକୁ ବାହୁଡି ଗଲେଣି । ଆଜିପାଇଁ କାମ ଏତିକି, କୁଲିମାନେ ପାହାଚ ଚଢି ଚଢି ଉପରକୁ ଆସିଲେ । ସମସ୍ତେ

ଦିଶୁଛନ୍ତି କ୍ଳାନ୍ତ, ଅବସନ୍ନ, ଶାରୀରିକ ସ୍ତରରେ ଯେତିକି ନୁହେଁ, ସେତିକି ମାନସିକ ସ୍ତରରେ, ରତ୍ନାକରଠୁଁ ଯିଏ ଯାହାର ପାଉଣା ଧରି ଘରମୁହାଁ ହେଲେ ।

ରତ୍ନାକର ମୁଣ୍ଡ ଝାଙ୍କି ସେଇ ବିରାଟ ଗର୍ତ୍ତ ଭିତରକୁ ଚାହିଁଲା । ସନ୍ଧ୍ୟା ହେଇ ଆସିଲାଣି । ଭିତରେ ବିରାଟ ଶୂନ୍ୟତା । ସଂଧ୍ୟାର ବହଳ ଅନ୍ଧାର ମେଞ୍ଚା ମେଞ୍ଚା ହେଇ ନେସି ହେଇ ଯାଉଛି । ନିମ୍ନ ମଧ୍ୟବିତ୍ତ ପରିବାରର ଆଶଙ୍କା ବିଜଡିତ ଅନିଶ୍ଚିତ ଭବିଷ୍ୟତ ପରି । ତାକୁ ମନେହେଲା ଇୟେ ଯେମିତି ପୁଞ୍ଜିଭୁତ ବ୍ୟଥା, ବେଦନା, ବ୍ୟର୍ଥତାରେ ପରିପୂର୍ଣ୍ଣ ବନ୍ଧ୍ୟା ଜରାୟୁଟିଏ । ତା ମନଟା ଟିକେ ଦବିଗଲା ।

ରତ୍ନାକରକୁ ଚିନ୍ତିତ ଦେଖି ସୁଧାକର କହିଲା- "ଭାଇ କଣ ଏତେ ଚିନ୍ତା କରୁଛ ? ଚାଲ ଘରକୁ ଯିବା । ମୋ ମନ କହୁଚି କାଲି ନିଶ୍ଚୟ ପାଣି ବାହାରିବ ।"

ହଁ-ରେ । ମୁଁ ବି ସେଇ କଥା ଭାବୁଛି । ଆମର ଏ ଅଞ୍ଚଳଟା ସମୁଦ୍ର ପତ୍ତନଠାରୁ ଢେର ଉଚ୍ଚରେ ଅଛି ତ ! ସେଥିପାଇଁ ଜଳସ୍ତରଟାର ଦୂରତ୍ୱ ଖୁବ୍ ବେଶି । ଆଉ କୂଅ ପୋଖରୀ ଖୋଳିଲେ ପାଣି ଏତେ ସହଜରେ କୋଉଠୁ ଆସିବ ? ଏତେ ରିସ୍କ ନେବା ପାଇଁ ଲୋକମାନେ ବି ଚାହାନ୍ତି ନାହିଁ ।

ଏତକ କହି ସାରିଲା ପରେ ରତ୍ନାକରକୁ ଟିକେ ହାଲ୍‌କା ଲାଗିଲା ।

ତା ପର ଦିନ । ଭଲ କରି ଅନ୍ଧାର ନ ଛାଡୁଣୁ ରତ୍ନାକର ବିଛଣା ଛାଡିଲା । କି ଏକ ଅବ୍ୟକ୍ତ ଆକର୍ଷଣରେ ସେ ଚୁପ୍ ଚାପ୍ ପାଞ୍ଚ ମାଣିଆ ଆଡେ ଗଡିଲା । ଅନ୍ଧାର ଛାଡି ଛାଡି ଆସୁଛି । ନଇଁ ପଡି କୂଅ ଭିତରକୁ ଚାହିଁଲା । ଆରେ ! ଏମିତି କ'ଣ ଚକ୍ ଚକ୍ କରୁଛି ? ପାଣି ? ହଁ-ହଁ-ଇୟେ ତ ପାଣି । ଖୁସିରେ ସିଏ ଅଧୀର ହୋଇ ପଡ଼ିଲା । କିଛି ବାଲିମାଟି ମିଶା ଗୋଳିଆପାଣି କୁଲିମାନଙ୍କର ବାହୁଙ୍ଗା ଝୁଡି ଶାବଳ କୋଦାଳ ଭିଜେଇ ଦେଇଛି । ନିଜକୁ ସମ୍ଭାଳି ପାରିଲା ନାହିଁ ରତ୍ନାକର । ସେ ଚିଲ୍ଲେଇ ଉଠିଲା-

ଆରେ ସୁଧା ! ବାପା ! ବୋଉ ! କୁନି !

ଧାଇଁ ଆସରେ ଧାଇଁ ଆସ !

ଆମ କୂଅରେ ପାଣି ବାହାରିଛି, ପାଣି ! ଏ ମାଟି ନିର୍ଜଳା ନୁହେଁ ରେ ଏ ମାଟି ଅଭିଶପ୍ତ ନୁହେଁ । ଆସ ଦେଖିବ କେମିତି ପାଣି ବାହାରୁଛି- ପାଣି - ପାଣି ।

ଆବେଗକମ୍ପିତ ହୋଇ ଭୂପୃଷ୍ଠରୁ ଭୂତଳପର୍ଯ୍ୟନ୍ତ ଲମ୍ବିଯାଇଥିବା ପାହାଚ ଉପରେ ସେ ପାଦ ଦେଲା । ଏକ ଅଲଂଘନୀୟ ଆକର୍ଷଣରେ ପାହାଚ ପରେ ପାହାଚ ଅତିକ୍ରମ କରି ସେ ଆଖି ପିଛୁଳାକେ ପହଞ୍ଚିଗଲା ତଳେ । ରାତିସାରା ବିନ୍ଦୁ ବିନ୍ଦୁ ହୋଇ ଝରିଥିବା

ଜଳ ସବୁ ଠା' ଠା'ଜମି ରହିଥିଲା । ଝର ଆସିଲାଣି । ତା ରାସ୍ତାଟାକୁ ଟିକେ ପରିଷ୍କାର କରିଦେଲେ ସ୍ରୋତଟା ପ୍ରଖର ହେଇଯିବ । ପାଖରେ ପଡ଼ିଥିବା କୋଦାଳଟାକୁ ଦୁଇ ହାତରେ ଧରି ସେ ଖୋଳି ଚାଲିଲା । ଆହୁରି ଖୋଳିଲା । ବିନ୍ଦୁ ବିନ୍ଦୁ ଝରୁଥିବା ଜଳ ଧାରା ରେ ପରିଣତ ହେଲା । ନିଶାଗ୍ରସ୍ତଙ୍କ ଭଳି ସେ ହିତାହିତ ଜ୍ଞାନଶୂନ୍ୟ ହୋଇ ଗର୍ତ୍ତଟାକୁ ଗଭୀରରୁ ଗଭୀରତର କଲା । ଯୁଗ ଯୁଗ ଧରି ଆବଦ୍ଧ ଜଳରାଶି ମୁକ୍ତିର ସ୍ୱାଦରେ ଉନ୍ମନା ହେଇ ପଡ଼ିଲେ ଯେମିତି । ହାବୁକା ହାବୁକା ହୋଇ ବାହାରକୁ ବାହରି ଆସିଲେ । ଦୁର୍ଲଭ ଅମୂଲ୍ୟ ରତ୍ନର ସନ୍ଧାନ କଲା ପରି ରତ୍ନାକର ନଇଁ ପଡ଼ି କୋଦାଳରେ ଚୋଟ ପରେ ଚୋଟ ପକାଇ ଚାଲିଥାଏ । ହୋଲି ପିଚ୍‌କାରୀରୁ ରଙ୍ଗ ବାହାରିଲା ପରି ତୀବ୍ର ବେଗରେ ଜଳଧାରା ସବୁ ତାର ମୁହଁ ଛାତି ପେଟ ଆଦି ସର୍ବାଙ୍ଗ ଭିଜେଇ ଦେଉଥିଲା । ସେଥିକି ନିଘା ନଥିଲା ତାର । ଏକ ଅପୂର୍ବ ଶିହରଣରେ ସେ ଶିହରି ଉଠୁଥିଲା । ଉନ୍ମାଦଙ୍କ ଭଳି ଝର ମୁହଁରେ ସେ ଚୋଟ ଉପରେ ଚୋଟ ପକେଇ ଚାଲିଥାଏ । ଉପରେ ବାପା, ମାଆ, ଭାଇଭଉଣୀ, ସ୍ତ୍ରୀ ଠିଆ ହୋଇ ରତ୍ନାକରର ଏ ଉଦ୍ଦାମତାକୁ ଉପଭୋଗ କରୁଥିଲେ ।

ପ୍ରଥମେ ଚେତା ପଶିଲା ବୁଢ଼ାବାପାର ।

"ଏଥର ଛାଡ଼ିଦେ' ରେ ରତନ । ପାଣି ସୁଅର ବେଗ ବଢ଼ିଲାଣି ।" ମାଆ କହିଲା- "ରତନା, ନୂଆ ପାଣି, ଗୋଟା ସୁଦ୍ଧା ଓଦା ହୋଇଗଲୁଣି । ଥଣ୍ଡା ଧରିବ । ପଳେଇ ଆ ମୋ ଧନ ।"

ସୁଧାକର ଡାକିଲା- "ଭାଇ ଏଥର ଆଉ ଚିନ୍ତା ନାହିଁ । ତମେ ଉପରକୁ ଉଠିଆସ ।"

ସ୍ତ୍ରୀ କହିଲା- "ଛୁଆଙ୍କ ପରି ଏମିତି ନବରଙ୍ଗ କ'ଣ ହଉଚ ? ଉପରକୁ ଉଠିଆସ ।"

ରତ୍ନାକର କାହାରି କଥା ଶୁଣି ପାରୁ ନଥିଲା ।

ପାଣିର ସର୍ ସର୍ ଶବ୍ଦ କୋଦାଳ ଚୋଟର ଚଟ୍ ଚଟ୍ ପ୍ରତିଧ୍ୱନି ଛଡା କିଛି ଆଉ ତା କାନରେ ପଡୁନଥିଲା ।

ଉପରେ କୋଳାହଳ ବଢୁଥିଲା । ଗାଁ ସାରା ଲୋକ ଜମି ଗଲେଣି । ରତ୍ନାକର ଅସମ୍ଭବକୁ ସମ୍ଭବ କରିଛି । ନିର୍ଜଳା ଗାଁକୁ ଜଳମୟ କରିଛି । ଯୁଗ ଯୁଗର ହଜିଲା ସ୍ୱପ୍ନକୁ ସେ ଖୋଜି ପାଇଛି । ସେ ପାଇଛି ଆଲୋକର ସନ୍ଧାନ । ସେଇ ଆଲୋକର ତେଜରେ ଉଦ୍‌ଭାସିତ ହୋଇ ଉଠୁଛି ଆକାଶ, ପୃଥିବୀ ଓ ପାତାଳ । ଦିଗନ୍ତ ବିସ୍ତରି ଯାଉଛି ଆନନ୍ଦର ଫୁଲଝଡ଼ି । ଜନତାଙ୍କ ଭିତରେ ଅମାପ ଉତ୍ସାହ ଓ ପ୍ରେରଣା । ଉପରୁ ଏକ ସ୍ୱରରେ ଜନତାଙ୍କ ହରିବୋଲ ଓ ହୁଳହୁଳି ଧ୍ୱନି ଶୁଭୁଥିଲା । କର ତାଳିରେ ଉଛୁଳି ଉଠୁଥିଲା ଦିଗ୍‌ବିଦିଗ ।

ବାଃ ବାଃ ରତ୍ନାକର । ତୁ ମହାନ୍ ହେଇ ଗଲୁ । ତୁ ଅମର ହେଇ ଗଲୁ । ତୁ ଆମର ଆଖି ଖୋଲି ଦେଲୁ । ଦେଖଣା ହାରି କହୁଥିଲେ । ଟୋକାଟାକଳିଆଙ୍କ ଭିତରୁ କେହି ଜଣେ ଉତ୍ସାହୀ ଯୁବକ ପାଟି କରି କହିଲା-

ରତ୍ନାକର ଭାଇ-

ଜନତା ପହେଳି ଫେରେଇଲେ

ଜିନ୍ଦାବାଦ ଜିନ୍ଦାବାଦ ।

ରତ୍ନାକର ଭାଇ- ହିପ୍‌ହିପ୍ ହୁର୍‌ରେ, ହିପ୍‌ହିପ୍ ହୁର୍‌ରେ ।

ଥ୍ରୀ ଚିଅରସ୍ - ଫର୍ ବ୍ରଦର ରତ୍ନାକର ।

ସେଇ କୋଳାହଳରେ ସତେ ଅବା ଦୋହଲିକି ଉଠିଲା ମାଟି । ରତ୍ନାକର କୋଦାଳ ଚୋଟ ମାରୁଥିବା ଜାଗାର ଚାରିପାଞ୍ଚ ଫୁଟ ଉପରୁ ମହଣେ ଓଜନର ଅତଡାଏ ମାଟି ଖସି ପଡ଼ିଲା ନଇଁ ପଡ଼ିଥିବା ରତ୍ନାକରର ପିଠି ଉପରକୁ । ସେ ଚିତ୍କାର କରିବାକୁ ବି ବେଳ ପାଇଲା ନାହିଁ । ପାଖକୁ ପାଖ ଆଉ ଗୋଟାଏ ଦୁଇଟା ଅତଡା ।

ଦେଖଣାହାରୀ ସ୍ତବ୍ଧ । ସବୁ ହର୍ଷ ଉଲ୍ଲାସ କୋଳାହଳ ମୃତ୍ୟୁ ଶୀତଳ ନିରବତାରେ ହଜିଗଲା । କେଇ ମୂହୁର୍ତ୍ତ ପାଇଁ ସମସ୍ତେ ନିର୍ବାକ୍, ସ୍ପନ୍ଦନହୀନ ହୋଇ ପଡ଼ିଲେ ।

ପୁଣି ଜନତାର ଚେତା ଫେରିଲା ।

ଆରମ୍ଭ ହେଲା ଆର୍ତ୍ତ ଚିତ୍କାର, କ୍ରନ୍ଦନରୋଳ, ବ୍ୟାକୁଳତା ।

ରତ୍ନାକର ପାଖରେ କିନ୍ତୁ ସେ ସବୁ କିଛି ପହଞ୍ଚି ପାରୁ ନଥିଲା । କୁଢ କୁଢ ମାଟି ଅତଡା ତଳେ ତାର ସ୍ୱପ୍ନ ଓ କଳ୍ପନା ତଥାପି ଆତ୍ମସତ୍ତା ଜାହିର ପାଇଁ ସଂଗ୍ରାମ ଜାରି ରଖିଥିଲା ।



# ଅମୁହାଁ କାଳିଦୁଆତ

ବଇଦା ଦାଦାର ନୁଆଁଣିଆ ଚାଳଟପି ତା ଅଗଣାରେ ପାଦ ଦେଉ ଦେଉ ମୋ ଶୈଶବର ସ୍ମୃତିକୁ ସାଉଁଟି ରଖିଥିବା ଓ ଏକଦା ମୋ ପାଇଁ ଅମୂଲ୍ୟ ମନେ ହେଉଥିବା ବସ୍ତୁଟିକୁ ଦେଖି ସଂପୂର୍ଣ୍ଣ ଭାବାବିଷ୍ଟ ହୋଇପଡ଼ିଲି । ଗୋଟିଏ ଅସମ୍ଭାଳ ପଣ ମୋ ଚେତନାକୁ ଲୁତୁପୁତୁ କରିଦେଲା । ମୁଁ ନଇଁପଡ଼ି ସେଇ ଆଣ୍ଟିକ୍ ପ୍ରାୟ ଦ୍ରବ୍ୟଟିକୁ ଝିଅଟି ହାତରୁ ଉଠେଇ ଆଣିଲି । ହଁ-ଆଣ୍ଟିକ୍ ନୁହେଁ ତ ଆଉ କ'ଣ ? ଏମିତିରେ ତ ମୋ ସ୍କୁଲ ଯିବାବେଳର ସ୍ମୃତି । ତା' ଆଗରୁ ଆହୁରି କାହିଁ କେତେ କାଳରୁ ସାଇତା ହୋଇଥିବା ଘରୋଇ ଜିନିଷଟିଏ । ଏବେ ଛଅସାତ ବର୍ଷର କାନ୍ଦୁରୀ ସିଂଘାଣୀନାକୀ ଝିଅଟା ଧରି ଖେଳୁଛି । ଝିଅଟାର ଆଖି ଦୁଇଟା ଲୁହରେ ଟଳମଳ ହେଉଥିଲା । ହାତ ଓ ଗୋଡ଼ ଦୁଇଟା ଦିଶୁଥିଲା କଦଳୀ ମଞ୍ଜା ପରି । ପେଟଟି ବାହାରି ପଡ଼ିଥିଲା ଆଗକୁ । ମୁଁ ଜିନିଷଟି ତା' ହାତରୁ ଉଠେଇ ନେବାରୁ ସେ କେବଳ କାନ୍ଦୁରା ଆଖିରେ ମୋତେ ଟିକେ ଚାହିଁଲା ଓ ପୁଣି ତା ଖେଳରେ ମନଦେଲା ।

ବସ୍ତୁଟିକୁ ଉପରକୁ ଉଠେଇ ଆଣି ମୁଁ ବାଁ ହାତ ପାପୁଲିରେ ଥୋଇ ଡାହାଣ ହାତର ପାପୁଲି ସ୍ପର୍ଶ ଦେଲି । ମୋ ଶରୀର ରୋମାଞ୍ଚିତ ହୋଇଉଠିଲା । ସତେ ଯେମିତି ସମୟର ସୁଅରେ ହଜିଯାଇଥିବା ପ୍ରେମିକା ପୁଣି ଅଭିସାରିକା ସାଜି ମୋ ଆଗରେ ଠିଆ ହୋଇଛି, ମୁଁ ଯାହା କଥା କହୁଛି, ସେଇଟି ଥିଲା ମୋ କୈଶୋରର ଅଜସ୍ର ଦୁର୍ବଳ ମୁହୂର୍ତ୍ତକୁ ଆପଣେଇ ନେଇଥିବା ଇଷତ୍ ସବୁଜ ରଙ୍ଗର ନିଦା କାଚରେ ତିଆରି କାଳି ଦୁଆତଟିଏ । ଆମ ସମୟରେ ଆଜିକାଲିର ଭଳିକି ଭଳିକି ଡଟ୍‌ପେନ୍ ନଥିଲା । ଆମେ ସବୁ ଲେଖୁଥିଲୁ ସାଦା କଲମରେ । ଫାଉଣ୍ଟେନ୍ ପେନ୍ ବାହାରିଥିଲେ ବି ଅକ୍ଷର ଖରାପ ହୋଇଯିବ ବୋଲି ଆମମାନଙ୍କୁ ସେଥିରେ ଲେଖିବା ପାଇଁ ସୁଯୋଗ ଦିଆଯାଉ ନଥିଲା । ହାତରେ କାଠି କଲମ ଓ ଦୁଆତକୁ ବହିବସ୍ତାନି ପାଖରେ ରଖି କଲମଟିକୁ ସେଥିରେ ବୁଡ଼େଇ ବୁଡ଼େଇ ଲେଖିଥିଲୁ । ଦୁଆତରୁ କାଳି ଢ଼ାଳି ହୋଇ ବହିଖାତା ନଷ୍ଟ ହେଉଥିଲା । ସାର୍ଟ ପ୍ୟାଣ୍ଟ୍‌ରେ କାଳିଦାଗ ଲାଗୁଥିଲା । ହାତମୁହଁ ସବୁ କାଳି ସରସର ହେଉଥିଲା । ଏଥିପାଇଁ ସ୍କୁଲ୍‌ରେ ସାର୍‌ଙ୍କଠାରୁ ଓ ଘରେ ବୋଉ ଆଉ ଅପାମାନଙ୍କଠାରୁ ଗାଳି ଖାଇବା ମୋ ପାଇଁ ଥିଲା ନିତିଦିନିଆ କଥା । ଯେତେ ସତର୍କତା ଅବଲମ୍ବନ କଲେ ବି ମୁଁ ଆଦୌ ଦୁଆତରେ ଥିବା କାଳିର ନିରାପତ୍ତା ରକ୍ଷା କରିପାରୁ ନଥିଲି । ଥରେ ତ ଏମିତି ହୋଇଥିଲା-

ବାର୍ଷିକ ପରୀକ୍ଷା ଖାତାରେ ଉତ୍ତରତକ ଲେଖିସାରି ସାର୍‌ଙ୍କୁ ଦେବା ପୂର୍ବରୁ ମୋ ହାତ ବାଜି ଦୁଆତଟାଯାକ କାଳି ସେହି ଖାତା ଉପରେ ହିଁ ଇଡ଼ିଗଲା, ସାର୍‌ଙ୍କଠାରୁ ବେତପାହାର ଖାଇ କାନ୍ଦି କାନ୍ଦି ମୁଁ ଘରକୁ ଫେରିଥିଲି । ପରୀକ୍ଷାରେ ଫେଲ୍ ହୋଇଯିବା ଭୟରେ ସେଦିନ ରାତିରେ ମୋତେ ନିଦ ହୋଇ ନଥିଲା ।

କିନ୍ତୁ ମୁଁ ଯେଉଁ କାଳି ଦୁଆତ କଥା କହୁଚି, ସେଥିରେ ଠିପି ଆଦୌ ନଥିଲା । ତଥାପି ତାକୁ ସଂପୂର୍ଣ୍ଣ ତଳମୁହାଁ କରିଦେଲେ ବି ବୁନ୍ଦାଏ କାଳି ତଳେ ପଡୁ ନଥିଲା । ଦୁଆତଟିର ମୁହଁ ଦେଇ ଦୁଇତିନି ଇଞ୍ଚର କାଚ ଭିତରକୁ ପଶିଯାଇ ମଝିରେ କଲମ ବୁଡ଼ାଇବା ପାଇଁ ଗୋଟିଏ ଅଣଓସାରିଆ ରାସ୍ତା ଥିଲା । ଏଇଟିକୁ କହନ୍ତି ଅମୁହାଁ କାଳିଦୁଆତ । ଏଇ ଦୁଆତଟି ଥିଲା ମୋ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ । ବଇଦା ଦାଦା ପୁଅ ସୁଶୀଳ ଥିଲା ସେ ଦୁଆତର ଅଧିକାରୀ । ମୋଠାରୁ ଦୁଇ ତିନି ବର୍ଷରେ ବଡ଼ ହେଲେ ବି ସୁଶୀଳ ମୋ କ୍ଲାସ୍‌ରେ ପଢୁଥିଲା । ସେ ଅଧାଦିନ ସ୍କୁଲ ଯାଏ ନାହିଁ । ତା ବୋଉ ସାଂଗରେ ଜାଲ ଧରି ନଦୀରୁ ମାଛ ଧରେ । ଛେଳି ଜଗେ ତ ଗାଈ ପାଇଁ ଘାସ ଆଣେ । ତା' ବାପା ସଂଗେ କେବେ କେବେ ବିଲକୁ ବି ଯାଏ । ଯେଉଁ ଦିନ ହାତରେ କିଛି କାମ ନଥାଏ ସେ ସ୍କୁଲକୁ ଆସେ । ତା ହସ୍ତାକ୍ଷର ଖାତା ସବୁ ମୁଁ ଲେଖିଦିଏ । ସାର୍ ଦେଇଥିବା ଅଙ୍କ ଓ ରଚନା ଆଦି ସେ ମୋ ଖାତାରୁ ଉତାରି ପକାଏ । ଏସବୁ ତା' ପ୍ରତି ମୋର କରୁଣା ବା ଅନୁକମ୍ପା ନଥିଲା ବରଂ ତା ମୋ ଭିତରେ ଗୋଟିଏ ଅଲିଖିତ ସର୍ତ୍ତ ଥିଲା । ଏ ସବୁ ବଦଳରେ ସେ ସ୍କୁଲ୍ ନ ଯିବା ଦିନ ତା କାଳି ଦୁଆତ ସଂପୂର୍ଣ୍ଣ ମୋ ଅକ୍ତିଆରରେ ରହୁଥିଲା । ମୁଁ ସ୍କୁଲ ଯିବା ଆଗରୁ ଆମ ବାଡ଼ିପଟ ଝରକା ଦେଇ ସିଏ ମତେ ତା' ଦୁଆତଟି ବଢ଼େଇ ଦେଇ ଚାଲି ଯାଉଥିଲା । ଏମିତିରେ ଆମ ଦୁହିଁଙ୍କର ବନ୍ଧୁତା । ଟାଣି ଓଟାରି ହେଇ ସୁଶୀଳ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଗଲା । ତା' ପୋଥିରେ ସେଇଠୁ ହିଁ ଡୋରି ବନ୍ଧାହେଲା ।

ମୋ ଖାତାରୁ ଗାଈର ଆତ୍ମକାହାଣୀ ଉତାରୁଥିବା ସୁଶୀଳ ନିଜେ ଗାଈଆଳର ଜୀବନ ବଞ୍ଚିଲା । ଗାଈମାନଙ୍କ ସଂପର୍କରେ ମୋ ପୋଥିଗତ ଜ୍ଞାନଠାରୁ ଅଧିକ ଅଭିଜ୍ଞତାର ଜ୍ଞାନ ଅର୍ଜନ କଲା । କିନ୍ତୁ ସେ ଜ୍ଞାନକୁ ନେଇ ଆଉ ତାକୁ ଗାଈ ରଚନା ଲେଖିବାକୁ ପଡ଼ିଲା ନାହିଁ । ଷଷ୍ଠଶ୍ରେଣୀ ବେଳକୁ ଆମକୁ ଫାଉଣ୍ଟେନ୍ ପେନ୍‌ରେ ଲେଖିବାର ଅଧିକାର ଦିଆଯାଇଥିବାରୁ ଅମୁହାଁ କାଳି ଦୁଆତର ଆବଶ୍ୟକତା ବି ରହିଲା ନାହିଁ । ସେହି ପରିମାଣରେ ସୁଶୀଳ ସହ ବନ୍ଧୁତ୍ୱରେ ବି ଭଟ୍ଟା ପଡ଼ିଗଲା ।

ଗାଁ ସ୍କୁଲରେ ପାଠସାରି ମୁଁ ସହରକୁ ଗଲି ଉଚ୍ଚଶିକ୍ଷା ପାଇଁ । ପାଠପଢ଼ା ଓ ଅନ୍ୟାନ୍ୟ ବ୍ୟକ୍ତିଗତ ଜଞ୍ଜାଳରେ ବ୍ୟସ୍ତ ରହି ବହୁଦିନ ପର୍ଯ୍ୟନ୍ତ ଗାଁ ସହ ସଂପର୍କ ରଖିପାରି ନଥିଲି । ପ୍ରକୃତ କଥା ହେଲା, ଗୁଡ଼ାଏ ଆନୁଷ୍ଠାନିକ ଶିକ୍ଷାଗତ ଯୋଗ୍ୟତା ହାସଲ କରିଥିଲେ ସୁଦ୍ଧା ମନମୁତାବକ ଚାକିରୀଟିଏ ପାଇ ନଥିଲି । ଏଥିପାଇଁ ଗଭୀର ମନସ୍ତାପରେ ପ୍ରାୟତଃ ମୁଁ

ଏକ ସ୍ୱେଚ୍ଛାକୃତ ଅଜ୍ଞାତବାସର ଜୀବନ ବଞ୍ଚୁଥିଲି । ନିଜ ବିଷୟରେ ଯେମିତି ଅଧିକ କିଛି କାହାକୁ କହୁ ନଥିଲି, ଅନ୍ୟ ବନ୍ଧୁମାନଙ୍କ ସଂପର୍କରେ ସେମିତି ବେଶିକିଛି ଜାଣିବା ପାଇଁ ମୋର ରୁଚି ନଥିଲା । ସେଥର ସାନ ଭଉଣୀର ବାହାଘର ପାଇଁ ମତେ ଆସିବାକୁ ପଡ଼ିଲା ଗାଁକୁ । ଏଥିପାଇଁ ଗୁଡ଼ାଏ ଦାୟିତ୍ୱ ବି ସମ୍ଭାଳିବାକୁ ପଡ଼ିବାରୁ ସମସ୍ତଙ୍କ ସହ ସଂପର୍କ ରଖିବା ମଧ୍ୟ ଜରୁରୀ ହୋଇପଡ଼ିଲା । ହଁ-କହିରଖୁଛି ସେତେବେଳକୁ ମୁଁ ଗୋଟିଏ ପ୍ରାଇଭେଟ୍ କଲେଜରେ ଚାକିରୀ ଖଣ୍ଡେ କରିସାରିଥିଲି । ସେ ଖବର ଗାଁରେ ପହଞ୍ଚି ସାରିଥାଏ । ପିଲାଦିନେ ମେଧାବୀ ଛାତ୍ର ଭାବରେ ମୋର ଗାଁରେ ଭାରି ନାଁ ଥିଲା । ପୁଣି ଏତେ ବର୍ଷ ଧରି ବାହାରେ ପଢ଼ିଲି । ତେଣୁ ମୁଁ ଯେଉଁ ଚାକିରୀ କରିବି ସେଇଟା ଯେ ତଦନୁସାରେ ମର୍ଯ୍ୟାଦାଜନକ ଓ ଦରମାଟା ବି ମୋଟା ଅଙ୍କର ହେବ ଏଥିରେ କାହାରି ସନ୍ଦେହ ନଥିଲା ।

ବଇଦା ଦାଦା ସହ ଭେଟ ହେଲା । ଶୈଶବରେ ଦାରିଦ୍ର୍ୟ ନିପୀଡ଼ିତ ବଇଦା ଦାଦାକୁ ମୁଁ ଯେଉଁ ଭାବରେ ଦେଖିଥିଲି, ତାର ନ୍ୟୁନତମ ଛାପଟିଏ ବି ତା'ପାଖରେ ଦେଖିଲି ନାହିଁ । ଜନ୍ମଜାତକରୁ କେବେ ସାର୍ଟ ଖଣ୍ଡେ ପିନ୍ଧି ନଥିବା ବଇଦା ଦାଦା ଦେହରେ ଥିଲା ଖଣ୍ଡେ ଟେରିକଟନ୍‌ର ସାର୍ଟ । ସଫାଧଳା ଧୋତିକୁ ସେ କୁଞ୍ଚ କରି ପିନ୍ଧିଥିଲା । ପାଦରେ ଥିଲା ହଳେ ଚପଲ । ଖାଲି ସେତିକି ନୁହେଁ, ହାତରେ ରିଷ୍ଟ ୱାଚ୍‌ଟିଏ ବି ସେ ବାନ୍ଧିଥିଲା । ମୋତିଆର ପତ୍ରରେ ଚୂନ ଦଳି ଖାଉଥିବା ତା ପାଟି କେତକୀ ଖଇର ଦିଆ ପାନରେ ଲାଲ୍ ଟହଟହ ଦିଶୁଥିଲା ।

ମତେ ଦେଖି ସେ କୋଟିନିଧି ପାଇଲା ପରି ହେଲା । ମୁଁ ତାକୁ ସୁଶୀଳ କଥା ପଚାରିଲି । ମୋ ପ୍ରଶ୍ନରେ ତାର ପିତୃତ୍ୱ ଆହୁରି ଉଜ୍ଜ୍ୱଳି ଉଠିଲା ଭଳି ମନେହେଲା । ପାଟିରୁ କଳେ ପାନ ଛେପ ପିଣ୍ଡା ତଳକୁ ପକେଇ ଦେଇ ସେ କହିଲା-

"ସୁଶୀଳ କ'ଣ ଗାଁରେ ଅଛି ? ସିଏ ପା ଏବେ ସୁରାଟରେ । ସ୍ୱରଟାକୁ ଟିକେ ନରମ କରି ମୋ ଆଡ଼କୁ ଅଳ୍ପ ଝୁଙ୍କି ପଡ଼ି କହିଲା- ଭଲ ଦି' ପଇସା ରୋଜଗାର କରୁଛି ଯେ । ଗଲାସନ ଝିଅଟାକୁ ଦେଇ ନେଇ ଉଠେଇ ଦେଲି । ସବୁ ଖର୍ଚ୍ଚ ଦେଲା ସେଇ । ଏସନ ଜମି ଅଧା ଏକର କିଣିଛି । ତାକୁ ହାତକୁ ଦି'ହାତ କରିଦେଲେ ମୋର ଛୁଟି । ହେଲେ ସିଏ କ'ଣ ଧରାଛୁଆଁ ଦେଉଛି ? କହୁଛି- କାଳକ ତ ଆମର ଟୁଙ୍ଗୀ ଘରେ କଟିଲା । ଏମିତି କ'ଣ ସବୁଦିନେ ଥିବା ବାପା ? ଘର ପଛକୁ ଲାଗି ଯେଉଁ ଡିହ ଖଣ୍ଡକ ଅଛି, ତା'ଉପରେ ଦି ବଖରା ପକ୍କାଘର କରିବାକୁ ଅଡ଼ି ବସିଛି । ତା'ପରେ ସେ ବାହାହବ ବୋଲି କହୁଛି ।"

ବଇଦା ଦାଦା ଗଲାଝାଡ଼ି ହସି ହସି କହିଲା- ସୁଶୀଳ ଆଉ ଆଗ ସୁଶୀଳ ହୋଇ ନାହିଁରେ ! ବୁଦ୍ଧିଶୁଦ୍ଧି ହେଲାଣି । ଆଗ ପଛକୁ ବିଚାରିଲାଣି । ସେ ପ୍ରଗଳ୍‌ଭ

ହେଇ ଗପୁଥିଲା ତା ପୁଅର ସଫଳତାର କାହାଣୀ ଆଉ ମୁଁ ନିରାସକ୍ତ ଶ୍ରୋତାଟିଏ ଭଳି କେବଳ ମୁଣ୍ଡ ଟୁଙ୍ଗାରୁଥିଲି । ଏଥର ସେ କଥାର ମୋଡ଼ ବଦଳେଇଲା । କହିଲା-

"ଆରେ ଟୁଟୁ! ତମେମାନେ ତ ମୁଣ୍ଡ ଲାଗିଗଲ । ଏଥର ଦୁଇଭାଇ ମିଶି ଘର ଖଣ୍ଡେ ଉଠେଇ ଦିଅ ।"

ମୁଁ ଅଳ୍ପ ହସି କହିଲି । "ମୁଣ୍ଡ କିଏ ଲାଗିଲା ଦାଦା ? ଭାଇତ ସେଇ ପ୍ରାଇଭେଟ୍ କମ୍ପାନୀରେ ଚାକିରୀ ଖଣ୍ଡେ କରିଛି ଯେ କେତେବେଳେ କ'ଣ ହେବ ତା'ର ଠିକ୍ ଠିକଣା ନାହିଁ । ମୋ କଥା ତ ଛାଡ଼ ।"

ସେ ଆହୁରି ଉତ୍ସାହିତ ହେଇ କହିଲା । "ଏମିତି ନାହି କାହିଁକି ଶୁଖଉଛୁ ? ତୁ ବା କ'ଣ ନେକେଚର୍ ଫେକଚର୍ ହେଇଛୁ ? ତୋ ବୋଉ ତ ଓଠରେ ଅଠର ଭରଣ ଧାନ ଶୁଖଉଥିଲା ତୋ କଥା କହି ।"

ମୁଁ କହିଲି- "ସେ କଥା ସତ ଯେ ! ହେଲେ ପଇସା କ'ଣ ମିଳିଲାଣି ?"

"କିଛିତ ହେଲେ ପାଉଥିବୁ ? ମତେ ଲୁଚଉଛୁ କାହିଁକି ? ମୁଁ କ'ଣ ତତେ ମାଗୁଛି ?" ସେ ଆପ୍‌ସାମାରି କହିଲା ।

ଅଗତ୍ୟା ସତ କଥା କହିବାକୁ ପଡ଼ିଲା । ମୁଁ ନିଷ୍ପ୍ରଭ କଣ୍ଠରେ କହିଲି- ଏମିତି ମୋ ଚଳିଲା ଭଳି ପାଞ୍ଚଶହ ଛଅଶହ ଦେଉଛନ୍ତି । ଆମର ଗ୍ରାଣ୍ଟ୍ ଆସିନି ତ !

ବଇଦା ଦାଦାର ଗାଉଁଲି ମୁଣ୍ଡରେ ଗ୍ରାଣ୍ଟ ଫ୍ରାଣ୍ଟ ଶବ୍ଦ ପଇଟିଲାନି କି କ'ଣ ସେ ବୋକାଙ୍କ ପରି ମୋ ମୁହଁକୁ ଚାହିଁ କହିଲା-

ଆରେ ଟୁଟୁ! ତୁ ଏତେ ପାଠ ପଢିଲୁ । ତୋ ବାପ ତୋ ପଛରେ ପାଣିପରି ପଇସା ବୁହାଇ ଦେଲା, କହୁଛୁ କ'ଣ ନା, ଜମା ଟଙ୍କା ପାଞ୍ଚ ଛଅ ଶହ ପାଉଛୁ ? ମୋ ଗଜ ମୁରୁଖ ପୁଅ ସୁଶୀଳ ବା ମାସକୁ ପନ୍ଦର ଶହ ଟଙ୍କା ପାଉଛି । ଚଳିବା ପାଇଁ ତାକୁ ଟଙ୍କା ପାଁ ଶହ ହେଲେ କାହିଁରେ କ'ଣ । ପ୍ରତି ମାସରେ ସେ ମୋ ପାଖକୁ ହଜାରେ ଟଙ୍କା ଲେଖାଏଁ ମନିଅର୍ଡର କରି ପଠଉଛି ।

ତା' କଥାରେ ଆମୋଦ ଅନୁଭବ କଲେ ବି ତା ବକ୍ତବ୍ୟର ସତ୍ୟତା ଓ ମୋ ପରିସ୍ଥିତିର ଦୟନୀୟତା ହୃଦୟଙ୍ଗମ କରି ମୁଁ ଟିକେ ସଂକୁଚିତ ହୋଇ ପଡ଼ିଥିଲି । ସେ ଆଜିକୁ ପନ୍ଦରବର୍ଷ ତଳର କଥା । ବଇଦା ଦାଦାର ସେ ବକ୍ତବ୍ୟ ମୋ ଛାତିତଳେ କୋଉଠି ନେସି ହେଇ ରହିଯାଇଥିଲା ଅନେକଦିନପର୍ଯ୍ୟନ୍ତ ।

ମୋ କଲେଜ ଇତି ମଧ୍ୟରେ ଅନୁଦାନ ପାଇସାରିଲାଣି । ବାପ ଗୋସାପ ଅମଳର ମାଟିଘର ଭାଂଗି ଦୁଇଭାଇ ମିଶି ଗାଁରେ ପକ୍କା ଘର ଖଣ୍ଡେ ବି କରିସାରିଲୁଣି ।

ରଜ ଛୁଟିରେ ଆସିଥିଲି ଗାଁକୁ ।

ବଇଦା ଦାଦା ପରିବାରର ବିପର୍ଯ୍ୟୟ କଥା ଶୁଣି ମୋ ମନଟା ଏକାବେଳେ ବିଷ ପିତା ହୋଇଗଲା । ତାକୁ ଦେଖା କରିବାକୁ ନ ଆସି ରହିପାରିଲିନି ।

ଆରେ ଟୁଟୁ! ତୁ କେତେବେଳେ ?

ମୋ ଚିନ୍ତା ରାଜ୍ୟରୁ ଫେରି ମୁହଁ ଟେକି ଚାହିଁଲି । ବାଡ଼ି ଖଣ୍ଡକରେ ଆଶ୍ରା ନେଇ ନରକଙ୍କାଳ ଭଳି ଠିଆ ହୋଇଛି ବଇଦା ଦାଦା । ମୋତେ ଦେଖି ତାର କୋରଡ଼ିଆ ଆଖି ଦୁଇଟାରେ ଜକେଇ ଆସିଲା ଲୁହ । ସେ କୋହ ସମ୍ଭାଳି ନପାରି ବିଳିବିଳେଇଲା ପରି କହିଲା-

"କ'ଣ ଆଉ ଦେଖିବୁ ଟୁଟୁ! ସୁଶୀଳ ମତେ ଠକିଦେଲାରେ । ଏ ବୁଢ଼ା ବୟସରେ ମତେ ଅନାଥ କରି ଦେଇ ଚାଲିଗଲା । ମୋ ବଅଁଶ ଉଚ୍ଛନ୍ନ ହେଇଗଲା । ଆଉ କିଛି କହିବା ପୂର୍ବରୁ ଖୁଁ ଖୁଁ କାଶି ସେ ଅଥୟ ହେଇଗଲା ।"

ମୁଁ କେବଳ ଜଣେ ଅସହାୟ ଦର୍ଶକଟିଏ ଭଳି ଦେଖୁଥିଲି ବଇଦା ଦାଦାକୁ ଚଟାଣରେ ବସି ଆଳିମାଳିକାକୁ ନେଇ ଖେଳୁଥିବା ରୋଗୀଣା ଝିଅଟିକୁ ଆଉ ମୋ ହାତରେ ଥିବା ସେଇ ଅମୁହାଁ ଦୁଆତକୁ ।

ବଇଦା ଦାଦା ପୁଣି ଆରମ୍ଭ କଲା ।

"କି ରୋଗ ଧରି ସେ ସିଆଡୁ ଆସିଲା ଯେ, ଆସିଲା ବେଳକୁ କଙ୍କାଳସାର ହୋଇସାରିଥିଲା । ସେଠିକାର ଡାକ୍ତର ଫେରେଇ ଦେଲେ । ମାସ ଛ'ଅଟାରେ ସିଏ ବାଟ କାଟିଲା । ସମସ୍ତେ କହିଲେ ତାକୁ କୁଆଡ଼େ ଏଡ଼ସ୍ ହୋଇଥିଲା । ଗାଁ ଲୋକ ମତେ ନିଆଁ ପାଣି ବନ୍ଦ କଲେ । ମତେ ଏକଘରକିଆ କଲେ । କେତେ ନେହୁରା ହେଇ ମୁଁ ସେମାନଙ୍କ ପାଦତଳେ ପଡ଼ି କହିଲି-ଗଲା ଲୋକତ ଗଲା- ଆମେ କାହିଁକି ହନ୍ତସନ୍ତ ହେବୁ ? କିନ୍ତୁ କେହି ଶୁଣିଲେନି ମୋ କଥା । କଥା ସେତିକିରେ ତୁଟିଲା ନାହିଁ । ମୋ କପାଳରେ ଆହୁରି ଅନୁଭୋଗ ଥିଲା ।"

ମୁଁ କୌତୁହଳୀ ହୋଇ ତା ମୁହଁକୁ ଚାହିଁଲି । ସେ କହିଲା-

"ହଠାତ୍ ଦିନେ ସହରରୁ ଦୁଇଜଣ ଧୋବଧାଉଳିଆ ବାବୁ ଆସି ମତେ କହିଲେ- ମୋ ବୋହୁକୁ ଆଉ ଏକ ମେଞ୍ଚଢ଼ ଛୁଆଟାକୁ ନେଇ ସେମାନେ କି ପରୀକ୍ଷା କରିବେ । ଏ ରୋଗଟା କୁଆଡ଼େ ଗେରସ୍ତ ଦେହରୁ ଭାରିଜାକୁ ଡିଏଁ । ତା ପିଲାଛୁଆକୁ ହୁଏ ।

ମୁଁ ରାଗରେ ଅଥୟ ହେଇଗଲି । ମୋ ଆଖି ଦୁଇଟାରେ ନିଆଁ ଜଳି ଉଠିଲା । ମନଇଛା ସେମାନଙ୍କୁ ଶୋଧିଲି । କହିଲି-ତମମାନଙ୍କର ଏଡ଼େ ବହପ ? ପୁଅଟା ତ ଗଲା ତା ବାଟରେ । ସୁନାଖଡ଼ିକା ପରି ମୋ ବୋହୂ ଦେହରେ କାହିଁକି କଳଙ୍କ ବୋଳୁଛ ?

ସିଏ ଆଉଟା ସୁନାମୁଣ୍ଡା । ତା'ଦେହରେ କିଛି ରୋଗ ବୈରାଗ ନାହିଁ । ସେମାନେ ମୋ କଥାକୁ ଖାତର କଲେ ନାହିଁ । ବୋହୂଟାକୁ ମୋର ଶିଖେଇ ମତେଇ ନେଇଗଲେ ଡାକ୍ତରଖାନା । ସାଙ୍ଗରେ ତା' ଛୁଆଟାକୁବି ।

କି ପରୀକ୍ଷା ତାକୁ କଲେ କେଜାଣି ? ସତମିଛ ସେଇ ଉପରବାଲା ଜାଣେ । ତା' ହାତରେ ମେଞ୍ଚାଏ ଔଷଧପତ୍ର ଧରେଇ ପଠେଇ ଦେଲେ ଘରକୁ । ଏ ରୋଗ କୁଆଡ଼େ ମାଆ ଝିଅ ଦୁହିଁଙ୍କ ଦେହରେ ଅଛି । ବୋହୂଟା ଏ ଦୁଃଖ ସହିପାରିଲାନି ରେ ଟୁଟୁ ! ସେଇଦିନ ରାତି ଅଧରେ ବେକରେ ଦଉଡ଼ି ଲଗେଇ ଦେଲା । ଏଇ ଛୁଆଟା ସାଂଗରେ ନରକରେ ଘାଣ୍ଟି ହେବା ପାଇଁ ମତେ ଛାଡ଼ି ଦେଇଗଲା । ମୋ ପାଇଁ ଏବେ ଦଶଦିଗ ଅନ୍ଧାର । ନା ମରି ପାରୁଛି ନା ବଞ୍ଚିପାରୁଛି ।"

କାନ୍ଧରେ ପକାଉଥିବା ତା ମଳିଛିଆ ଗାମୁଛାରେ ଦୁଇ ଆଖି ପୋଛି ସେ କହିଲା "ଏ ବାଳୁତ ଛୁଆଟା କାହା ଦୁଆରକୁ ଗଲେ ତାକୁ ସମସ୍ତେ ଦୂର୍‌ଦୂର୍ ମାର୍ ମାର୍ କରୁଛନ୍ତି । ସାତ ଅଛୁଆଁ ଲୋକ ଭଳି ମତେ ନାକ ଟେକୁଛନ୍ତି । ମୋ ଘରପାଖ ରାସ୍ତା ଦେଇ ଲୋକମାନେ ଯିବା ଆସିବା ବି ବନ୍ଦ କରି ଦେଲେଣି ।"

ସେ ହତୋତ୍ସାହିତ ହୋଇ ମତେ କହିଲା-

"ତୁ ବା ଏତେ ପାଠ ପଢ଼ିଛୁ ? ସତରେ କ'ଣ ଏ ରୋଗ ମୋ ପୁଅକୁ ହେଇଥିଲା ବୋଲି ମୁଁ ବି ଅଛୁଆଁ ହେଇଗଲି । ମତେ ଛୁଇଁଦେଲେ ଏ ରୋଗ ଗାଁ ସାରା ମାଡ଼ିଯିବ ?"

କ'ଣ କହି ବଇଦା ଦାଦାଙ୍କୁ ବୁଝେଇବି ମତେ ଭାଷା ଜୁଟିଲା ନାହିଁ । ମୋ କଣ୍ଠ ଓଦା ହେଇଆସିଲା । ମୁଁ ଅସହାୟ କଣ୍ଠରେ କହିଲି, ନାଇଁ ଦାଦା ସେ ସବୁ ଭୁଲ୍ ଧାରଣା । ଏ ରୋଗ ଏମିତି ଛୁଇଁ ଦେଲେ କି ମିଳିମିଶି ରହିଲେ ବ୍ୟାପେ ନାହିଁ । ଏସବୁ ଅନ୍ଧବିଶ୍ୱାସ । ମୋଠୁଁ ଏମିତି ଆଶ୍ୱାସନା ଶୁଣି ସେ ଆଶାୟୀ ହୋଇଉଠିଲା । ଅନୁନୟ ସ୍ୱରରେ କହିଲା- ମୁଁ କେତେଦିନ ଆଉ ଏମିତି ଦହଗଞ୍ଜ ହେଉଥବିରେ ଟୁଟୁ ! ତୁ ମୋ ପାଇଁ କିଛି ଗୋଟାଏ କର । ଠାକୁରେ ତୋର ମଂଗଳ କରିବେ ।

ଗାଁ ବାଲାଙ୍କୁ କହି କିଛି ଗୋଟାଏ କରିବାର ପ୍ରତିଶ୍ରୁତି ଦେଇ ମୁଁ ବିମର୍ଷରେ ଘରମୁହାଁ ହେଲି ।

ଦାଣ୍ଡ ଦୁଆର ମୁହଁରେ ଲୁଙ୍ଗି ତଉଲିଆ ଓ ନୂଆ ସାବୁନ୍ ଖଣ୍ଡେ ଧରି ବୋଉ ଠିଆ ହୋଇଥିଲା । ବିରକ୍ତ ହେଇ କହିଲା-

ସକାଳୁ ସକାଳୁ ବଇଦାଟା ଘରକୁ କାହିଁକି ପଶି ଯାଇଥିଲୁ ?

କ'ଣ ଆଉ ତତେ କହିବି ଯେ ! ବାଡ଼ିପଟଦେଇ କୂଅ ପାଖକୁ ଯା । ପାଣି କଢ଼ା ହେଇଅଛି, ତୋ ପିନ୍ଧା ଲୁଗା ଅଲଗା କରି ରଖିବୁ । ଧୋବା ଘରେ ପଡ଼ିବ । ଏଇଟା ପିନ୍ଧି ଆସିବୁ ।

ମୁଁ ବୋଉକୁ ବୁଝାଇବାକୁ ଯାଇ କହିଲି- ତମମାନଙ୍କର ଭୁଲ୍ ଧାରଣା ଲୋ ବୋଉ ! ଏ ରୋଗ ଏମିତି ଏତେ ସହଜରେ ମାଡ଼େ ନାହିଁ ।

ତୁ ମତେ ଆଉ ପାଠ ଶିଖାନା । ମୁଁ ଯାହା କହୁଛି ସେୟା କର । ବୋଉ ମୁହଁ ଛିଞ୍ଚାଡ଼ି କହିଲା ।

ବୋଉକୁ କିଛି ଜବାବ ନଦେଇ ମୁଁ 'ହୋ' 'ହୋ' ହୋଇ ହସି ଉଠିଲି ।

ବାପା ଘର ଭିତରେ ଥିଲେ, କେମିତି ଗୋଟାଏ ଅବାଗିଆ ସ୍ୱରରେ କହିଲେ- ବୋଉ କଥା ମାନିନେଲେ ତୋର କ୍ଷତିଟା କ'ଣ ହେଇଯାଉଛି ? ଅଯଥା ଯୁକ୍ତି କରିବା ଅଭ୍ୟାସ ତୋର କାଳେ କାଳେ ଗଲା ନାହିଁ ।

ଅଗତ୍ୟା ନିରବରେ କୂଅ ପାଖକୁ ଗଲି । ନୂଆ ଲକ୍ସ ସାବୁନ୍ ଖଣ୍ଡେ ଖୋଲି ଦେହରେ ଲଗେଇବା ପୂର୍ବରୁ ଦୁଇହାତ ପାପୁଲିକୁ ମୁଁ ଭଲରୂପେ ନିରୀକ୍ଷଣ କଲି । ସୁଶୀଳ ଝିଅ ହାତରୁ କାଲି ଦୁଆତଟା ଉଠାଇ ଆଣି ଏଇ ଦୁଇ ପାପୁଲିରେ ମୁଁ ଏପଟ ସେପଟ କରୁଥିଲି । ଲୁହ ଲାଳ ସିଂଘାଣିରେ ଘାଣ୍ଟି ହୋଇ ଖେଳୁଥିବା ଝିଅଟି ଦେହରୁ ମାରାତ୍ମକ ଏଡ଼ସ୍ ରୋଗର ଜୀବାଣୁଟିକେ ଅଟକି ଗଲାକି ମୋ ପାପୁଲିରେ ? ଭୟ ଓ ଆଶଙ୍କାରେ ମୁଁ ଜଡ଼ସଡ଼ ହୋଇଗଲି । ଏକ କୃତ୍ରିମ ଆତଙ୍କ ମୋ ଚେତନାକୁ କ୍ରମଶଃ ଗ୍ରାସ କରି ଆସୁଥିଲା, ମୋର ସବୁ ପୋଥି ପଢ଼ା ଜ୍ଞାନ ମତେ ଅସିଦ୍ଧ ଲାଗୁଥିଲା, ଭୟାତୁର ଦୃଷ୍ଟିରେ ମୁଁ ଦେଖୁଥିଲି-ସତେ ଯେମିତି ମାରାତ୍ମକ ଏଡ଼ସ୍ ରୋଗ ବହନ କରି ଆଣୁଥିବା ଅସଂଖ୍ୟ ଜୀବାଣୁ ମୋ ପାପୁଲି ସାରା କିଲିବିଲି ହେଉଛନ୍ତି । ଲେଲିହାନ ଜିହ୍ୱା ପ୍ରସାରିତ କରି ମତେ ଗ୍ରାସ କରିବାକୁ ଧାଇଁଆସୁଛନ୍ତି । ମୋ ଭିତରର ଭୀରୁ ଓ ଦୁର୍ବଳ ମଣିଷଟି ମୋର ସକଳ ଶୁଦ୍ଧ ଭାବନା ଓ ସଂସ୍କାରକୁ ସଂପୂର୍ଣ୍ଣ ଗ୍ରାସ କରିଦେଲା । ମୁହୂର୍ତ୍ତକ ପାଇଁ ମୁଁ ଚିନ୍ତା ଚୈତନ୍ୟ ଶୂନ୍ୟ ସଂକୀର୍ଣ୍ଣ ଓ ହାଲକା ମଣିଷଟିଏ ପାଲଟି ଗଲି । ସେଇ ଅସହାୟ ଆବେଗ ଭିତରେ କେତେବେଳେ ମୁଁ ନୂଆ ସାବୁନ୍‌ଟା ପାପୁଲି ଦୁଇଟାରେ ଘଷି ଘଷି ଅଧା କରିସାରିଲିଣି ସେ ଦିଗକୁ ମୋର ନଜର ନଥିଲା ।

"ଛୁଆଙ୍କ ଭଳି ପାପୁଲି ଦୁଇଟାକୁ ଏମିତି ସାବୁନ୍‌ରେ ଘଷୁଛୁ କାହିଁକି ? ବୋହୂ ଖାଇବାକୁ ବାଢ଼ିଲାଣି ।" ବୋଉର କଣ୍ଠସ୍ୱରରେ ମୁଁ ମୋ ସମ୍ବିତ୍ ଫେରିପାଇଲି ।

ଆରେ ସତେତ ! ମୁଁ ମୂର୍ଖ ଏ କ'ଣ କରୁଛି ? ନିଜର ସଂକୀର୍ଣ୍ଣ ଚିନ୍ତାରେ ନିଜେ ସଂକୁଚିତ ହୋଇପଡ଼ି ଡବ୍‌ଡବ୍ କରି ବାଲ୍‌ଟିଏ ଯାକ ପାଣି ଅଜାଡ଼ି ଦେଲି ମୋ ମୁଣ୍ଡ ଉପରେ ।



# ଦୁଇଟି ନୀଡ଼ହରା ପକ୍ଷୀର ସଙ୍ଗୀତ

ସବିତା ଶାଶୁଘରୁ ଫେରି ହୁଲି ଡଙ୍ଗାଟିରେ ଭରାନଈ ପାର ହୋଇ ବାପଘର ଗାଁ ନଈ ବାଲିରେ ପାଦ ଦେଲା ବେଳକୁ ନଈପଠା ଲୋକାରଣ୍ୟ ହୋଇ ସାରିଥିଲା । ସମସ୍ତେ ଦିଶୁଥିଲେ ବିଷର୍ଣ୍ଣ, ଲୋତକାପ୍ଲୁତ । ସେମାନଙ୍କ ଭିତରେ ସ୍ତ୍ରୀଲୋକ, ଯୁବତୀଝିଅ ଓ ବାଳୁତଙ୍କ ସଂଖ୍ୟା ଥିଲା ଅଧିକ । ସେ ଯେଉଁଦିନ ସବାରୀରୁ ଓହ୍ଲେଇ ଏଇ ନଈବାଲିରେ ପାଦଦେଇ, ଏଇ ହୁଲିଡଙ୍ଗାରେ ପ୍ରଥମ କରି ଶାଶୁଘରକୁ ଯିବାପାଇଁ ବାହାରିଥିଲା ସେଦିନ ବି ଏ ନଈପଠା ଏମିତି ଲୋକାରଣ୍ୟ ହୋଇଉଠିଥିଲା । ସେଦିନ ସବିତା କାନ୍ଦୁଥିଲା । ବାପା, ଭାଇ, ମାଆ, ଖୁଡ଼ୀ, ଭାଉଜ ଓ ବାନ୍ଧବୀମାନଙ୍କ ଠାରୁ ଭିଜିଲା ଆଖିରେ ବିଦାୟ ନେଉଥିଲେ ବି ତା' ଅଳତାବୋଳା ପାଦ, ସିନ୍ଦୁରିତ ମଥା, ପାଟ ଓଢ଼ଣୀ ସବୁ ମିଶି ତାକୁ ହର୍ଷୋତ୍‌ଫୁଲ୍ଲ କରି ଦେଇଥିଲେ । ଶତରଙ୍ଗ ବିଭାରେ ସେ ବିଭାସିତ ହୋଇ ପଡୁଥିଲା । ଆଜି ତା' ଆଖିରେ ଲୁହ ନଥିଲା, ଏକ ସମ୍ପୂର୍ଣ୍ଣ ନିରାସକ୍ତ ଓ ଶୂନ୍ୟ ଚେତନା ତାକୁ ହତଶ୍ରୀ କରିଦେଇଥିଲା । ହାତ ଶୂନ୍ୟ, ପାଦ ଶୂନ୍ୟ, ମଥା ବି ଶୂନ୍ୟ । ସଫେଦ ଶାଢ଼ୀଖଣ୍ଡେ ତା ଦୁର୍ବଳ ନହନହକା, ଶୁଖି କଳାକାଠ ପଡ଼ିଯାଇଥିବା ଦେହଟାକୁ ଢ଼ାଙ୍କି ରଖିଥିଲା । ଦେଖଣାହାରୀଙ୍କ ଭିତରେ ମୃତ୍ୟୁଶୀତଳ ନିରବତା । ତା'ର ଏଇ ଶ୍ରୀହୀନ ରୂପ ଭେକ ଯେମିତି ସମସ୍ତଙ୍କୁ ମୁକ ଅଥର୍ବ କରିଦେଇଛି । ନଈପଠା ପାର୍ ହୋଇ ଗାଁ ମୁଣ୍ଡ ଦେଇ ସେ ଯେତେବେଳେ ଅଗଣାରେ ପାଦଦେଲା ଜେଜୀମା ଢ଼ୋ କରି ଏରୁଣ୍ଡି ବନ୍ଧରେ ମୁଣ୍ଡ ପିଟିଦେଇ ମଡ଼ା କାନ୍ଦଣା ଆରମ୍ଭ କରିଦେଲା । ସବିତା ଲଥ୍ କରି ସେଇ ଅଗଣାରେ କାନ୍ଥକୁ ଆଉଜି ବସିପଡ଼ିଲା । ନଈପଠା ପାଖରୁ ଅତି କଷ୍ଟରେ କୋହ ରୁଦ୍ଧ କରି ଆସୁଥିବା ଦେଖାଣାହାରୀଙ୍କ ଭିତରେ ଯେମିତି ବିସ୍ଫୋରଣଟିଏ ହୋଇଗଲା । ଜେଜୀମା ସହ କେତେକ ମହିଳାଙ୍କ କଣ୍ଠ ଫଟେଇ ବାହାରି ଆସିଲା ଲହରିଆ କୋହ । ତା'ପଛେ ପଛେ ଅବୋଧ ଶିଶୁଗୁଡ଼ାକ ବି ପାଟିକରି କାନ୍ଦି ଉଠିଲେ । ସବିତା କିନ୍ତୁ ସେମିତି ମୁଣ୍ଡଟାକୁ ଅଳ୍ପ ପଛକୁ ଢ଼ଳେଇ କାନ୍ଥକୁ ଡେରିହୋଇ ବସିଥିଲା । ଫାଟିଗଲା ଜେଜୀମାର ଛାତି । ସେ ଉଠିଆସି ତା ଦୁଇବାହୁକୁ ଜୋର୍‌ରେ ଝାଙ୍କିଦେଇ ସେମିତି କାନ୍ଦୁ କାନ୍ଦୁ କହିଲା–

ଆଲୋ କାନ୍ଦ୍ ! କାନ୍ଦଲୋ ଚଣ୍ଡାଳୁଣୀ କାନ୍ଦ୍ । ନହେଲେ ତୁ ପଥର ପାଲଟିଯିବୁ ଲୋ ହତଭାଗୀ ! କାନ୍ଦ୍ କାନ୍ଦ୍ କଣ୍ଠ ଫଟେଇ କାନ୍ଦ୍ । ଛାତିଫଟେଇ କାନ୍ଦ୍ । ପୋଡ଼ାକପାଳୀ ! ଆହୁରି ଜୋର୍‌ରେ ଚିର୍‌ଚିରେଇ କାନ୍ଦିଲା ଜେଜୀମା ।

ସତକୁ ସତ ସେ ପଥର ପାଲଟି ଯାଇଥିଲା କି କ'ଣ, ତା' କାଚ ଆଖିରୁ ଟୋପାଏ ବି ଲୁହ ବାହାରୁ ନଥିଲା । ସେ ସେମିତି ମୋଞ୍ଚାଏ ବରଫ ପରି ବସି ରହିଥିଲା । ବାପା ମାଆଙ୍କୁ ଭଲକରି ନ ଚିହ୍ନୁଣୁ ସେମାନଙ୍କୁ ହରେଇ ଜେଜୀମା କୋଳରେ ବଢ଼ିଥିଲା । ରାଜକୁମାର ପରି ବରସହ ଭାରି ଜାକଜମକରେ ତା ବାହାଘର ବି ହୋଇଥିଲା । ଦଇବ ସହିଲା ନାହିଁ । ଅଷ୍ଟମଙ୍ଗଳା ନ ଯାଉଣୁ ଦୁର୍ଘଟଣାରେ ତା' ମୁଣ୍ଡରୁ ସିନ୍ଦୁର ଲିଭିଲା ।

କିଶୋରୀ ଜୀବନରେ ଚଳଚଞ୍ଚଳ ପ୍ରଗଳ୍‌ଭା ଝିଅଟା ଥବିର ପାଲଟିଗଲା । ତା ଦୁଃଖରେ ଆକାଶ ଲୁହ ଝରେଇଲା । ସମୁଦ୍ର ମୁଣ୍ଡ କୋଡ଼ିହେଲା । ଅସରାଅସରା କୋହରେ ପବନ ଅସ୍ଥିର ହେଲା । ବତୁରିଗଲା ବସୁଧା । ସିଏ କିନ୍ତୁ ସେମିତି ପାଷାଣୀ ଅହଲ୍ୟା ଭଳି ଦୁଃଖ ଓ ଯନ୍ତ୍ରଣାକୁ ଏମିତି ପିଇଗଲା ଯେ ଦେଖିଲା ଲୋକର ଛାତି ଫାଟିଗଲା ।

ଶାଶୁ ଭଲ ମଣିଷ । ସିଏ ବ୍ୟସ୍ତ ହେଲେ । ତା' କକାକୁ ଡକେଇ ଲୁହ ପୋଛି କହିଲେ, ପୁଅଟା ଜନ୍ମ କରିଥିଲି ଯେ, କୋଳି ଗୋଟିକର ସୁଆଦ ପାଇଲି ନାହିଁ ଜୀବନରେ । ମୋର ତ ଦିନକାଳ ସରି ଆସିଲାଣି । ବୋହୂଟାର ସାରା ଜୀବନ ପଡ଼ିଛି । ତା ଜୀବନ ପାଇଁ ସାହାରାଟିଏ ଦରକାର । ମୋର ଦୂର ସମ୍ପର୍କୀୟ ମା ବାପା ଛେଉଣ୍ଡ ପୁତୁରା ପିଲାଟିଏ ଅଛି । ଭାବୁଛି ତାକୁ ଆଣି ଘରେ ରଖିବି । ଦୁହେଁ ଦୁହିଁଙ୍କର ସୁଖ ଦୁଃଖ ବାଣ୍ଟିବେ । ମୋ ବୋହୂକୁ ତମେ ସାଙ୍ଗରେ ନେଇଯାଅ । ଚାରି ଛଅମାସ ରଖ । ତା ମନଟା ଟିକେ ହାଲ୍‌କା ହୋଇଗଲେ ଏଇଠି ଆଣି ଛାଡ଼ିଦେଇ ଯିବ । ସିଏ ମୋର ବୋହୂ ନୁହେଁ ଝିଅ । ମୁଁ ତା'ର କନ୍ୟାଦାନ କରିବି ।

ଶାଶୁଙ୍କ ଆଗରେ ମୁହଁ ଖୋଲି ନଥିଲେ କକା । ଓଠ କାମୁଡି ରକ୍ତ ଚାଉଳ ଚୋବେଇ ରହିଲେ । ସବିତାକୁ ଧରି ଫେରି ଆସିଲେ ଘରକୁ । ତା ଶାଶୁ ଉପରେ ଥିବା ସବୁତକ କ୍ରୋଧକୁ ଅଜାଡ଼ି ପକେଇଲେ ସବିତାକୁ ଶୁଣେଇ ଶୁଣେଇ ।

ଆରେ ! କ'ଣ କରି ପାଇଛି ବୁଢ଼ୀ । ଆମେ ଶାସନୀବ୍ରାହ୍ମଣ । ଆମ ଘରର ଝିଅ ଦ୍ୱିତୀୟ ବିବାହ କରିବ ? ଏ ବଂଶରେ କେବେ ହେଇଚି ଏକଥା ? ଆମ ପୂର୍ବପୁରୁଷ ଆମ ହାତରୁ ପାଣି ପାଇବେଟି ? କହିଲା କ'ଣ ନା, କୋଉ ଗୋଟାଏ ବାରବୁଲା ଛତରା ସାଙ୍ଗରେ ମୋ ଝିଅର ବାହାଘର କରିଦେବ । ବହପ ଦେଖ ବୁଢ଼ୀର । କାଲେ ତା ସମ୍ପତ୍ତି ସବୁ ଆମେ ଖାଇଦେବୁ । ସେଇଥିପାଇଁ ବୁଢ଼ୀର ଏସବୁ ଫିକର ।

ଶାଶୁଙ୍କ ପ୍ରତି କକାଙ୍କ ଏ ମନ୍ତବ୍ୟ ତାକୁ ଆଦୌ ଭଲ ଲାଗୁନଥିଲା । ତଥାପି ସେ ନିରବ ରହିଲା । ଶାଶୁ ତାଙ୍କ ସମ୍ପତ୍ତିର ସୁରକ୍ଷା ପାଇଁ ଯେତିକି ଚିନ୍ତିତ ନଥିଲେ, ସବିତାର ସୁରକ୍ଷିତ ଭବିଷ୍ୟତଟି ପାଇଁ ସେତିକି ଚିନ୍ତିତ ଥିଲେ ବୋଲି ସେ ଅନୁଭବ କରୁଥିଲା ।

ହଠାତ୍ ଦିନେ ସବିତା ଦେଖିଲା, ବାହାଘର ବେଳେ ସେ ଶାଶୁଘରକୁ ନେଇଥିବା ସବୁ ଆସବାବ ପତ୍ର, ଆୟ ଅଳଙ୍କାର ଅଗଣାରେ ଠୁଳ ହୋଇଛି । କକା ତାକୁ ପଦଟିଏ

ପଚାରିଲେନି ? ବହୁତ କଷ୍ଟ ପାଇଲା ସବିତା । କାହାକୁ କ'ଣ କହିବ ? ତା କପାଳ ତ ମନ୍ଦ । ଯିଏ ସାତ ଜନମ ପାଇଁ ସାଥୀ ହେବ ବୋଲି ଅଗ୍ନିକୁ ସାକ୍ଷୀ ରଖି ପ୍ରତିଜ୍ଞା କରିଥିଲା ଦିନ ସାତଟାର ସାଥୀ ସେ ହୋଇ ପାରିଲାନି । ଆଉ ଶାଶୁ ! କୋଉ ଅଲାଜୁକୀ ପଣରେ ସେ ଶାଶୁ ଶାଶୁ ହେବ ?

ତଥାପି ତା' ମନ ବୁଝିଲା ନାହିଁ । ସ୍ୱାମୀ ହରେଇବା ଯନ୍ତ୍ରଣା ସହ ଏ ଯନ୍ତ୍ରଣା ମିଶିଗଲା । ସେ ଆହୁରି କାଠେଇଗଲା ।

ଦିନେ ଖାଇବସିଲା ବେଳେ ସବିତା ଉଦ୍ଦେଶ୍ୟରେ କକା କହିଲେ, "ମୁଁ ଓକିଲ ପରାମର୍ଶ କରୁଥିଲି । ତୋ ଭାଗ ସମ୍ପତ୍ତିଟା ଆଉ କାହିଁକି ସେ ଗାଁରେ ପଡ଼ି ରହିବ ? ମୁଁ ଭାବୁଛି, ନୋଟିସ୍‌ଟିଏ ପଠେଇ ଦେଲେ ସେମାନେ ଭଲରେ ଭଲରେ ପଠେଇ ଦିଅନ୍ତେ । ଆମେ ଅଡୁଆ ଭିତରକୁ କାହିଁକି ଯିବା ?"

ସତେ ଅବା ଆକାଶରୁ ଖସିପଡ଼ିଲା ସବିତା । ଭାତଗୁଣ୍ଡାଟା ତଣ୍ଟିରେ ଅଟକିଗଲା । ତରକାରୀ ଗିନାରେ ହାତ ପକେଇ ସେ ସେମିତି ବସିରହିଲା ।

ସେ ଜାଣିଛି, କକା ଯାହା ନିଷ୍ପତ୍ତି ନିଅନ୍ତି କାମରେ ନଲଗେଇ ଛାଡନ୍ତି ନାହିଁ ।

ତା ନିରବତାକୁ କକା ସମ୍ମତି ବୋଲି ଗ୍ରହଣ କଲେ ।

ଏ ଘଟଣାର ଆଠଦିନ ପରେ କକା ଓକିଲଟିଏ ଧରି ଆସିଲେ । ଥର ଥର ହାତରେ ନିରାସକ୍ତ ହୋଇ ସେ କାଗଜଟିରେ ଦସ୍ତଖତ କରିଦେଲା ।

ସବିତାର ଦୂର ସମ୍ପର୍କୀୟ ମାମୁଁ ଜଣେ କଟକ ବଡ଼ ଡାକ୍ତରଖାନାରେ ଡାକ୍ତର ଥିଲେ । ତାଙ୍କରି ଚେଷ୍ଟାରେ ସେ ନର୍ସିଂ ଟ୍ରେନିଂ ଗଲା । ସେଠୁ ଆସି ଗାଁଠାରୁ ଷାଠିଏ କିଲୋମିଟର ଦୂରରେ ଛୋଟିଆ ଚାକିରୀଟିଏ ବି ପାଇଗଲା । ଧୀରେ ଧୀରେ ତା' ଉପରଦେଇ ବହି ଯାଇଥିବା ଝଡ଼ ଝଞ୍ଜାର ତାନ ପାତଳ ହୋଇ ଆସୁଥିଲା । ସେ ସ୍ୱାଭାବିକ ଜୀବନକୁ ଫେରି ଆସୁଥିଲା ।

ପଇସା ପତ୍ରରେ ଲୋଭ ମୋହ ନଥିଲା ସବିତାର । ଦରମା ଗଣ୍ଡାକ ବି ସେ ରଖୁ ନଥିଲା ନିଜ ପାଖରେ । ଦରମା ପାଇବା ପରେ କେତେବେଳେ ଜେଜୀମା ପାଇଁ ଶାଲ୍ ଖଣ୍ଡେ ତ ଖୁଡ଼ୀ ପାଇଁ ଶାଢ଼ୀ ଖଣ୍ଡେ କିମ୍ବା ପିଲାମାନଙ୍କ ପାଇଁ କ'ଣ ନାହିଁ କ'ଣ କିଣି ପକାଉଥିଲା । କେବେ କେବେ ଖୁଡ଼ୀ ଓ ପିଲାମାନଙ୍କର କିଛି ବରାଦ ବି ରହୁଥିଲା । ସବୁ ପୂରଣ କରିସାରି ବାକି ପଇସାତକ ସେ କକା ହାତକୁ ବଢ଼େଇ ଦେଉଥିଲା । ବେଳେବେଳେ କକା ନିଜେ ଆସି ତା' ପାଖରୁ ପଇସାତକ ଧରି ଯାଉଥିଲେ ।

ଜେଜୀମା ଆକଟିକରି କହୁଥିଲା- "ଆଲୋ ଚଣ୍ଡାଳୁଣୀ ! ପଇସାପତ୍ରରେ ନିଘା କର । ନିଜ ଦେହକୁ ଚାହାଁ । ଭଲ କରି ଶାଢ଼ୀ ଦି'ଖଣ୍ଡ କିଣ । କେତେଦିନ ହେଲା ସେ

ମୁଣ୍ଡକୁ ତେଲ ହାତ ଯାଇନି ?" ପାନିଆ ଆଉ ତେଲଗିନାଟା ଧରି ସେ ତା ପଛେ ଗୋଡ଼ାଉଥିଲା ।

ଦାର୍ଶନିକ ସୁଲଭ ହସଟିଏ ହସିଦେଇ ସେ ବୁଢ଼ୀମା ମୁହଁକୁ ଚାହିଁ ଭାବୁଥିଲା- କ'ଣ ଅଛି ଏ ଦେହ ଖଣ୍ଡକରେ ? ରୋଗଯନ୍ତ୍ରଣା ଘା' ଘଉଡ ଅନେଶ୍ୱତ ରୋଗର ଘର । ଡାକ୍ତରଖାନା ଓ ରୋଗୀଙ୍କ ଆର୍ତ୍ତ ଚିତ୍କାର ଭିତରେ ସେ ନିଜ କଥା ସଂପୂର୍ଣ୍ଣ ଭୁଲି ସାରିଥିଲା । ତା' ସେବା ସାହଚର୍ଯ୍ୟ ବଦଳରେ ରୋଗୀଟି ଓଠରେ କ୍ଷୀଣ ହାସ୍ୟରେଖା ତା' ପାଇଁ ଅମୂଲ୍ୟ ସମ୍ପଦ । ଅଷ୍ଟରତ୍ନ ଅଳଙ୍କାର, ଏ ରୂପବେଶ ସାଜସଜ୍ଜା ସବୁ ତା' ପାଇଁ ମିଛ ଅହମିକା ।

ବୁଢ଼ୀ ମା' ତାଗିଦ୍ କରି କହୁଥିଲା- "ଆଲୋ ! ଏମିତି ଜଳଜଳ କରି ଚାହିଁଛୁ କ'ଣ ବା ? ଆ ବସ୍ । ମୁଣ୍ଡଟାରେ ଟିକେ ତେଲହାତ ଲଗେଇ ଦେବି ।"

ଜେଜୀମା ମନରେ କଷ୍ଟ ଦେବାପାଇଁ ଇଚ୍ଛା ହେଉନଥିଲା ତା'ର । ସେ ଦୁଆର ବନ୍ଧ ତଳକୁ ବସିପଡୁଥିଲା । ବୁଢ଼ୀମା ତା ମୁଣ୍ଡରେ ଶିରା ଶିରା କରି ଗିନାକଯାକ ତେଲ ଘସି ଦେଉଥିଲା । ପାନିଆଟା ଧରି ବାଳଗୁଡାକୁ ଟେକାଟେକି କରି କେଲୁଣି ଖୋସା ପରି ଖୋସାଟିଏ ପକେଇ ଦେଉଥିଲା ।

ହସ୍‌ପିଟାଲ୍‌ରେ କାମର ଭିଡ଼ ବଢ଼ିଲା । ସବିତାର ଅଭିଜ୍ଞତା ବଢ଼ିଲା । ତା ସାଙ୍ଗକୁ ଦାୟିତ୍ୱ ବି । ଗାଁକୁ ଆସିବାର ବ୍ୟବଧାନ ଧୀରେ ଧୀରେ ବଢ଼ିଲା ।

କକାଙ୍କ ଠାରୁ ଗୋଟେ ଜରୁରୀ ଫୋନ୍ କଲ୍ ପାଇଲା । ଜେଜୀମା ଦେହ ଖରାପ । ଶୀଘ୍ର ଆସିବୁ । ସେ ଆସିଲା ଗାଁ'କୁ । ଗାଁ'କୁ ଆସି ଆଶ୍ୱସ୍ତ ହେଲା ଯେ ଜେଜୀମା'ର କିଛି ହେଇ ନଥିଲା । ସେ ସେମିତି ଖୁଣ୍ଟିଟା ପରି ବସିଥିଲା । ନୈଶ ଭୋଜନ ସାରି ବିଶ୍ରାମ ପାଇଁ ସେ ଜେଜୀମା' କୋଠରୀକୁ ଗଲା । ପଞ୍ଚମ ଶ୍ରେଣୀରେ ପଢୁଥିବା କକାପୁଅ କୁନୁଆସି ପାଖରେ ବସିଲା । ସବିତା ତା' ନାକଟାକୁ ଟିକେ ହଲେଇ ଦେଇ କହିଲା-

"କିରେ ! ତତେ ଆଜି ନିଦ ହଉନି କି ?"

କୁନୁ କହିଲା- "ମୁଁ ଆଜି ତମ ପାଖରେ ଶୋଇବି ନାନୀ । ହଉ ଶୁଅ ଯେ, କିନ୍ତୁ ରାତିରେ ବିଛଣା ଓଦା କରିବୁନି ।" ତାକୁ ଚିଡ଼ାଇବା ପାଇଁ କହିଲା ସବିତା ।

ନାଇଁମ ନାନୀ ! ମୁଁ ପରା ବଡ଼ ହୋଇଗଲିଣି । ମୁଁ କ'ଣ ଆଉ ବିଛଣାରେ ମୁତୁଛି କି ?

ମୁରୁକି ହସି ଲାଜ ଲାଜ ହେଇ କୁନୁ କହିଲା- ଜାଣିଛ ନାନୀ ! ମୁଁ ଆଉ କାଲିଠୁଁ ତମକୁ ନାନୀ ଡାକିବିନି ।

କୌତୁହଳୀ ହୋଇ ସବିତା କହିଲା-କାହିଁକି ? ମୁଁ କି ଦୋଷ ତୋର କଲି କି ?

"ଧେତ୍ ତମେ ବଡ଼ ବୋକୀଟା । ତମେ ଦୋଷ କାହିଁକି କରିବ ? ମୁଁ ତମକୁ ନାନୀ ନ ଡାକି ମାଆ ବୋଲି ଡାକିବି ।"

କୁନୁ ଇୟାଡେ ସିଆଡେ ଚାହିଁ ଗୋପନୀୟ ସତ୍ୟପାଠ କଲାପରି କହିଲା- "ହେଇଟି ନାନୀ । ତମକୁ ମାଆ ବୋଲି ଡାକିଲେ ତମେ ତମର ସବୁ ଧନ ସମ୍ପତ୍ତି ମୋ ନାଁ'ରେ କରିଦବ ବୋଲି ବୋଉ କହିଛି ।"

ସବିତା କୁନୁର ସୁନ୍ଦର ଗୁଲୁଗୁଲୁ ମୁହଁକୁ ଚାହିଁଲା । ମଣିଷର ଲୋଭ ମୋହ ଓ ସ୍ୱାର୍ଥ ଦୁନିଆର ସବୁ ସୁନ୍ଦର ଚିଜକୁ କିପରି ଅସୁନ୍ଦର କରିଦିଏ, ସେଇ କଥା ଯେମିତି ଲେଖା ହୋଇଥିଲା ସେ ନିଷ୍ପାପ ମୁହଁଟିରେ ।

ସେ କୁନୁକୁ ନିଜ ଆଡକୁ ଆଉଜାଇ ଆଣି କହିଲା-ହଉ ତୁ ଶୋଇପଡ଼ । ସେକଥା ପରେ ବୁଝିବା ।

ସେଦିନ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ନିଦ ହୋଇନଥିଲା ତାକୁ । ପରିଣତ ବୟସରେ ଏକମାତ୍ର ପୁତ୍ରକୁ ହରେଇ ଶୂନ୍ୟକୁ ସମ୍ବଳ କରି ଦିନ କାଟୁଥିବା ଶାଶୁଙ୍କ କଥା ତା'ର ବେଶୀ ବେଶୀ ମନେ ପଡ଼ିଲା । ହସ୍‌ପିଟାଲ୍, ରୋଗୀ, ଔଷଧ ଓ ଆର୍ତ୍ତନାଦ ଭିତରେ ତାଙ୍କ ମୁହଁଟା ବି ସାମିଲ୍ ହୋଇଗଲା । ସେ ମୁହଁ ଦିଶୁଥିଲା ଆହୁରି ବ୍ୟାକୁଳ । ଆହୁରି ବେଦନା ବିଧୁର । ଏକାନ୍ତ ଅସହାୟ ।

ତା' ପରଦିନ ମୁହଁ ଅନ୍ଧାରରୁ ଉଠି କାହାକୁ କିଛି ନ କହି ସେ ସୁଟ୍‌କେଶ ଧରି ବାହାରି ପଡିଲା ।

ବିଛଣାରେ ପଡ଼ି ଶୂନ୍ୟ ଦୃଷ୍ଟିରେ ଛାତକୁ ଚାହିଁ ରହିଥିବା ଶାଶୁଙ୍କ ପାଦ ଛୁଇଁ ସେ ଯେତେବେଳେ ପ୍ରଣାମ କଲା ଶାଶୁ ଭୋ ଭୋ ହୋଇ କାନ୍ଦି ଉଠିଲେ ।

"ଏ ସତୁରୀ ବର୍ଷର ବୁଢ଼ୀଟାକୁ ବି ମଲାତଳେ କାଟିଦେଲୁ ବୋହୂ !"

ଉଦ୍‌ଗତ କୋହକୁ ସମ୍ଭାଳୁ ସମ୍ଭାଳୁ ସବିତା କହିଲା-

"ମତେ କ୍ଷମା କରନ୍ତୁ ମାଆ । ଆଜିଠାରୁ ମୁଁ ଏଇଠି ରହିବି ।ଆପଣଙ୍କ ପାଖରେ । ମତେ କ'ଣ ଆପଣଙ୍କ ସେବା ଟିକେ କରିବାକୁ ସୁଯୋଗ ଦେବେନି ମାଆ !"

ଶାଶୁ ଆବେଗ ଜଡ଼ିତ ହୋଇ ତାକୁ କୋଳକୁ ଆଉଜେଇ ଆଣିଲେ । ଅନେକ କିଛି କହିବାର ଥିଲେ ବି ସେ କିଛି କହିପାରୁ ନଥିଲେ । କେବଳ ବାଷ୍ପରୁଦ୍ଧ କଣ୍ଠରେ ଏତିକି କହିଲେ- "ତୁ ସତ କହୁଛୁ ?"

ସବିତା କିନ୍ତୁ ତାଙ୍କ କହିବା କଥା ଅପେକ୍ଷା ନ କହିବା କଥାକୁ ବୁଝୁଥିଲା ବେଶୀ ।



# ପତିତା

ସଂଚିତା ଟ୍ୟାକ୍ସିରୁ ଓହ୍ଲେଇ ଅଗଣାରେ ପାଦଦେବା ପର୍ଯ୍ୟନ୍ତ ସୁଷମା ଦେବୀ ଗଦାଏ ପଥର ପରି ସତେଅବା ଲାଖି ଯାଇଥିଲେ ମାଟିରେ । ଆଖି ଦୁଇଟା କିନ୍ତୁ ଜୁଳୁ ଜୁଳୁ ହେଇ ତାର ସମସ୍ତ କ୍ରିୟାକଳାପକୁ ନିରୀକ୍ଷଣ କରୁଥିଲା । ସିଏ ଟଳମଳ ପାଦରେ ଆସି ଏରୁଣ୍ଡି ପାଖରେ ଠିଆ ହେଲା ।

ସୁବୋଧ ତା କଡ଼େ କଡ଼େ ଆସୁଥିଲା । ଦୁର୍ଘଟଣା ଘଟିବା ପରଠାରୁ ଏହାଥିଲା ସଂଚିତାର ପ୍ରଥମ ଗୃହ ପ୍ରବେଶ । ଧର୍ଷଣକାରୀଙ୍କ କବଳରୁ ଚେତାଶୂନ୍ୟ ଅବସ୍ଥାରେ ଉଦ୍ଧୃତ ହେବା ପରେ ସେ ନର୍ସିଂହୋମ୍‌ରେ ଥିଲା ଏପର୍ଯ୍ୟନ୍ତ । ଶାରୀରିକ ଆଘାତରୁ ସେ ଆଶୁ ଆରୋଗ୍ୟ ଲାଭ କରିଥିଲା । କିନ୍ତୁ ମାନସିକ କ୍ଷତଟା ତାକୁ ସମ୍ପୂର୍ଣ୍ଣ ବ୍ୟତିବ୍ୟସ୍ତ କରିଦେଇଥିଲା । ତା ମସ୍ତିଷ୍କ ଏକରକମ ଭାରସାମ୍ୟ ହରାଇ ଆସୁଥିଲା । ଡାକ୍ତରମାନଙ୍କର ଅକ୍ଳାନ୍ତ ପରିଶ୍ରମ ଓ ସୁବୋଧର ଅମାପ ଭଲପାଇବା, ସଦିଚ୍ଛା ଓ ସହାନୁଭୂତି ତାକୁ ପୁନର୍ଜନ୍ମ ଦେଲା । ନର୍ସିଂହୋମରୁ ଡ଼ିସ୍‌ଚାର୍ଜ ହେଲାବେଳେ ଡଃ ଗୁପ୍ତା କହିଥିଲେ-ସଂଚିତା ଦେବୀଙ୍କ ପାଇଁ ଔଷଧ ଅପେକ୍ଷା ସମବେଦନାର ଆବଶ୍ୟକତା ବେଶୀ । ଏଥିରେ କେବେ ଊଣା କରିବେନି । ଆପଣ ବିଚାରବନ୍ତ ଲୋକ ।

ସୁବୋଧ ଡ଼ାକ୍ତରଙ୍କ ପରାମର୍ଶକୁ ଆନ୍ତରିକତାର ସହ ଗ୍ରହଣ କରିଦେଇଥିଲା । ଗ୍ରାମ୍ୟ ପରିବେଶରେ ପ୍ରତିପାଳିତା ଓ ଧର୍ମକୁ ନେଇ ବଞ୍ଚିଥିବା ରକ୍ଷଣଶୀଳ ମାଆ ସୁଷମା ଦେବୀଙ୍କୁ ବୁଝାଇବା ପାଇଁ ତାକୁ କମ୍ ପରିଶ୍ରମ କରିବାକୁ ପଡ଼ିନଥିଲା । ଘଟଣାଟିରେ ଯେ ସଂଚିତାର ଆଦୌ ଦୋଷ ନାହିଁ ଏକଥା ମାଆ ହୃଦୟଙ୍ଗମ କରିଥିଲେ ସୁଦ୍ଧା ଲୋକଲଜ୍ଜା ଓ ରୋଷେଇଘର ଦେଇପିଣ୍ଡି, ଠାକୁର ଘରର ପବିତ୍ରତା ରକ୍ଷାନେଇ ତାଙ୍କ ମନରେ ଯେଉଁ ଶଙ୍କା ଉପୁଜିଥିଲା ତଥାପି ତାହା ସମୂଳେ ଦୂର କରି ପାରିନଥିଲା ସୁବୋଧ । ମାଆ ସିଧା ସିଧା କହିଥିଲେ-

ସେ ଘରକୁ ଆସୁ, ମୋର ଆପତ୍ତି ନାହିଁ । କିନ୍ତୁ ମୋ ଦେଇପିଣ୍ଡିରୁ ମୋ ସପ୍ତପୁରୁଷ ପାଣି ପାଉଛନ୍ତି । ମୋ ଠାକୁର ଘରେ ମୋ କୁଳର ଇଷ୍ଟଦେବତା ଅଛନ୍ତି । ସେଠାରେ

ଯେମିତି ତା ପାଦ ନପଡ଼େ । ସେମିତି କିଛି ହେଲେ ମୋ ରାଧାମାଧବଙ୍କୁ ନେଇ ମୁଁ ବୃନ୍ଦାବନ ଚାଲିଯିବି ।

ସୁବୋଧ ଲକ୍ଷ୍ୟ କଲା, ସଂଚିତାକୁ ସଂପୂର୍ଣ୍ଣ ବର୍ଜନ କରିବାକୁ ଜିଦ୍ ଧରିଥିବା ମାଆଙ୍କ ସ୍ୱର ନରମ ହୋଇ ଆସିଲାଣି । ସମୟ ସବୁ କ୍ଷତର ଉତ୍କୃଷ୍ଟ ମଲମ । ତାରି ଉପରେ ଭରସା ରଖି ଗୌତମ ଦୃଢ଼ ପଦକ୍ଷେପ ନେଲା ।

ଟ୍ୟାକ୍ସିରୁ ଓହ୍ଲେଇବା ପରେ ସୁବୋଧର ସତର୍କ ଦୃଷ୍ଟି ପ୍ରଥମେ ମାଆ ଉପରେ ପଡ଼ିଲା । ସେ ଅନୁଭବ କଲା, ସଂଚିତାକୁ ଦେଖିବା ପରେ କେମିତି ଏକ ଅସ୍ୱାଭାବିକ କୋମଳତା ସୁଷମାଦେବୀଙ୍କ ମୁଖମଣ୍ଡଳରେ ଛାଇ ହୋଇଯାଇଛି । ତାଙ୍କ ଚକ୍ଷୁ ଦୁଇଟିରୁ ସତେ ଯେମିତି ସଂସାରଯାକର ପଶ୍ଚାତ୍ତାପ ନଦୀଟିଏ ହୋଇ ନିଗିଡ଼ି ପଡୁଛି । ସେଇ ନଦୀର ବାତ୍ସଲ୍ୟ ବନ୍ୟା ରୂପାନ୍ତରିତ କରି ଦେଇଛି ମାଆକୁ ।

ସଂଚିତା ଦେହଳି ଡ଼େଇଁ ସୁଷମା ଦେବୀଙ୍କ ପାଦ ଛୁଇଁବାକୁ ଉଦ୍ୟତ ହେଉଥିଲା । ଏକ କରୁଣ କାତର କଣ୍ଠରେ ସେ ହଠାତ୍ ବିସ୍ଫୋରଣଟିଏ କରି କହିଲେ 'ରହ' ।

ସଂଚିତା ଓ ସୁବୋଧ ଥମକି ଠିଆ ହୋଇଗଲେ । ଏକ ଅଘଟଣ ଆଶଙ୍କାରେ ସୁବୋଧ ଅସ୍ଥିର ହୋଇପଡ଼ିଲା ।

ସୁଷମାଦେବୀ କାଳିସୀ ଲାଗିଲା ପରି ଠାକୁର ଘର ଭିତରକୁ ପଶିଗଲେ ଓ ଗୋଟାଏ ବୋତଲ ଭର୍ତ୍ତି ଗଙ୍ଗାଜଳ ଆଣି ସଂଚିତାର ମୁଣ୍ଡ ଉପରେ ଢ଼ବ୍ ଢ଼ବ୍ କରି ଢ଼ାଳିଦେଇଗଲେ, ଆପାଦ ମସ୍ତକ ଭିଜିଗଲା ସଂଚିତା । ପରବର୍ତ୍ତୀକାଳୀନ ଆହୁରି ଗୋଟାଏ ଉନ୍ମତ୍ତ ଦୃଶ୍ୟର ସମ୍ମୁଖୀନ ହେବା ପାଇଁ ମାନସିକ ପ୍ରସ୍ତୁତି ନେଉଥିଲା ସୁବୋଧ । କିନ୍ତୁ ସଂଚିତା ଥିଲା ନିର୍ଲିପ୍ତା । ତା ଜୀବନ ଦେଇ ଯେଉଁ ସାମୁଦ୍ରିକ ଝଡ଼ ସୃଷ୍ଟି ହୋଇଯାଇଥିଲା, ଆନୁସଂଗିକ ଭାବେ ତାକୁ ଆହୁରି କେତେ ଯେ ଝଡ଼ ବିକ୍ଷୁବ୍ଧ କରିବ ସେଥିପାଇଁ ସେ ଯଥେଷ୍ଟ ଧୈର୍ଯ୍ୟ ସଂଚୟ କରିଥିଲା ବୋଧହୁଏ ।

ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଦେଇ ମାଆ କହିଲେ- "ମତେ ନୁହେଁ ଲୋ ହତଭାଗିନୀ । ଯା, ଯା ସେଇ ରାଧାମାଧବଙ୍କ ପାଦଛୁଇଁ ଆଗ ମୁଣ୍ଡିଆ ମାର । ତାଙ୍କରି ଧୂଳି ନେ । ତାଙ୍କରି ଆଶୀର୍ବାଦ ତତେ ପୁଣି ନୂଆ ଜୀବନ ଫେରେଇଦେବ । ମୁଁ ତ ଛାର ମଣିଷଟାଏ । ମୋ ହାତରେ କଣ ଅଛି ? ସେଇ ତତେ ଶୁଦ୍ଧ ସୁବର୍ଣ୍ଣ କରିଦେବେ । ସିଏ ମୁକ୍ତି ଦେଇଥିଲେ ଅହଲ୍ୟାକୁ । ତାରା ମନ୍ଦୋଦରୀଙ୍କୁ ସତୀ କରିଥିଲେ । ସିଏ ପତିତପାବନ । ଯା-ଯା, ତାଙ୍କରି ଶରଣ ନେ ।"

ସଂଚିତାକୁ ଏକ ରକମ କୁଣ୍ଢେଇ ଧରି ଟେକି ଟେକି ସେ ଠାକୁର ଘରକୁ ନେଇଗଲେ ।

ବିସ୍ମୟାଭିଭୂତ ହୋଇପଡ଼ିଲା ସୁବୋଧ । ବାହାରକୁ ରୁକ୍ଷ, ରୁଢ଼ିବାଦୀ ମନେହେଉଥିବା ମାଆର ଅନ୍ତରଟା ଯେ ଏତେ ବିଶାଳ, ଏତେ ଜ୍ଞାନଦୀପ୍ତ ଏଇ ପ୍ରଥମ ଥର ପାଇଁ ସେ ଅନୁଭବ କଲା । କୃତଜ୍ଞତାର ଦୁଇ ଧାର ଲୁହ ତାର ଦୁଇ ଚକ୍ଷୁକୋଣରୁ ଉବୁକି ଆସିଲା ।

ଚଟାଣ ଉପରେ ଆଣ୍ଠୁମାଡ଼ି ରାଧାମାଧବଙ୍କ ପାଦସ୍ପର୍ଶ କରୁଥିଲା ସଂଚିତା । ଦିଅଁଙ୍କ ପାଦତଳୁ ଫୁଲଟିଏ ଆଣି ମାଆ ତା କପାଳରେ ସ୍ପର୍ଶ କରାଇଲେ । ସେ କୃତ୍ୟ କୃତ୍ୟ ହୋଇଯାଉଥିଲା । ରାଧାମାଧବଙ୍କ ପାଦ ଛାଡ଼ି କାନ୍ଦି କାନ୍ଦି ଲୋଟି ପଡ଼ିଲା ମାଆଙ୍କ ପାଦତଳେ । ତାକୁ କୋଳକୁ ଉଠାଇ ନେଇ ସେ କହିଲେ- "ଆଲୋ କାନ୍ଦୁଛୁ କାହିଁକି ? ତୁ ତ ମୋ ସୁନାବୋହୂ । ନେ ନେ ତୋ ପିଲା କବିଲା ତୁ ସମ୍ଭାଳ । ମୋ ମଲାହାଡରେ ଆଉ କେତେ ବଳ ଅଛି ଯେ ମୁଁ ନାଚୁଥିବି, ମଲାଗାତକୁ ଯିବା ପର୍ଯ୍ୟନ୍ତ ?

ସଂଚିତା ଠାକୁର ଘରୁ ବାହାରି ଆସିଲା । ସୁବୋଧ ଲକ୍ଷ୍ୟ କଲା । ଦିନ ଦିନ ଧରି ସେ ଯାହା ପାରୁନଥିଲା ଗୋଟିଏ ମୁହୂର୍ତ୍ତରେ ମାଆ ତାହା ପାରିଛନ୍ତି । ତା ମୁହଁରୁ ବିଷାଦର କାଳିମା ସଂପୂର୍ଣ୍ଣ ଅପସରି ଯାଇଛି । ...ଆତ୍ମବିଶ୍ୱାସର ଚମକରେ ତା ଦୁଇ ଆଖି ଉଜ୍ଜ୍ୱଳ ହୋଇ ଉଠୁଛି । ଯେଉଁଭଳି ଧୀର ଓ ନିଷ୍କ୍ରିୟ ପଦପାତରେ ସେ ଏଗୁଣ୍ଠି ଡ଼େଇଁ ଘରଭିତରକୁ ପଶିଥିଲା, ତାହା ଯେମିତି କେଉଁ ଦେବତାର ଯାଦୁକରୀ ସ୍ପର୍ଶରେ ଚଳଚଞ୍ଚଳ ହୋଇଉଠିଛି । ଆଶ୍ୱସ୍ତ ହେଲା ସୁବୋଧ ।

ଛାତି ପକେଟରୁ ମୋବାଇଲ ଗର୍ଜନ କରି ଉଠିଲା, ବାଙ୍ଗାଲୋରରୁ ଫୋନ୍ କରି କହୁଥିଲା ଅପା ।

ସଂଚିତାକୁ ବୁଝାଇବୁ । ବୋଉ କଥା ଆଦୌ ଧରିବନି । ନହେଲେ ତମ ସଂସାର ଉଚ୍ଛନ୍ନ ହୋଇଯିବ । ସିଏ ପୁରୁଣା କାଳିଆ ମଣିଷ । ଆଜିକାଲିକା ମଣିଷର ନୂଆ ନୂଆ ସମସ୍ୟା ସହ ସେମାନେ ଆଦୌ ଅଭ୍ୟସ୍ତ ନୁହଁନ୍ତି ।

ସୁବୋଧ ଚୁପି ଚୁପି କହିଲା- ତୁ ନିଶ୍ଚିନ୍ତ ରହ ଅପା । ବୋଉ ବୁଝିଗଲାଣି । ସବୁ ଠିକ୍ ଠାକ୍ ଚାଲିଛି ।

ସେ ପଟରୁ ଅପାର କଣ୍ଠସ୍ୱର । ହଁ-ତୁ ବି ଯେମିତି ଏ ଦୁର୍ଘଟଣାକୁ ଦୁଃସ୍ୱପ୍ନ ବୋଲି ଭୁଲିଯାଉ । ତୋ ମନର ବିନ୍ଦୁଏ ବି ଦ୍ୱନ୍ଦ୍ୱ ତୋ ଦାମ୍ପତ୍ୟ ଜୀବନକୁ ଉଚ୍ଛନ୍ନ କରିବା ପାଇଁ ଯଥେଷ୍ଟ । ସଂଚିତା ଫୁଲପରି ନିଷ୍ପାପ । ତା ମନଟା ଗଙ୍ଗାଭଳି ପବିତ୍ର । ତାକୁ ନିର୍ମଳ ଚିତ୍ତରେ ଗ୍ରହଣ କରିବୁ ।

ସୁବୋଧ ବିରକ୍ତ ହେଲା ପରି କହିଲା, ଅପା ! ତୁ ପାଗଳୀ ହେଇ ଗଲୁନା କଣ ? ମତେ ଏସବୁ ବୁଝେଇବା କଣ ନିହାତି ଜରୁରୀ ? ସଂଚିତାକୁ ତୁ କଣ ମୋ ଅପେକ୍ଷା ବେଶୀ ଜାଣିଛୁ ?

ତୋ ଉପରେ ମୋର ଭରସା ଅଛି । ଅପା ଫୋନ୍ ରଖି ଦେଲା । ସୁଷମା ଦେବୀ କହୁଥିଲେ-ପୁଅ । ଯା ବଜାରରୁ କୁକୁଡ଼ା ମାଉଁସ ଟିକିଏ ଧରି ଆସିବୁ । ବୋହୂ ରାନ୍ଧିବ । କୋଉ ଦିନରୁ ପିଲାଙ୍କ ମୁହଁରେ ଆଇଁଷ ପାଣି ବାଜିନି ।

ସୁଷମା ଦେବୀ ଆଇଁଷ ଖାଆନ୍ତି ନାହିଁ । ସଂଚିତା ଚିକେନ୍ ଖାଇବାକୁ ଭଲ ପାଏ । ମାଆ ଜାଣନ୍ତି ।

ସୁବୋଧ ଚିକେନ୍ ଧରି ଫେରୁଥିଲା । ମଲ୍ଲୀଫୁଲର ପସରା ମେଲେଇଥିବା ବୁଢ଼ୀ ପାଟିକରି କହିଲା- "ଏ ବାବୁ! ଫୁଲ ନିଅ ! ଫୁଲ । ସଜମଲ୍ଲୀର ଗଜରା ।" ସୁବୋଧର ବାଇକ୍ ବୁଢ଼ୀର ପସରା ପାଖରେ ଅଟକି ଗଲା । ବୁଢ଼ୀ ସୁବୋଧ ହାତକୁ ବଢ଼େଇ ଦେଲା ଦୁଇଟା ଗଜରା । ସୁବୋଧ ପର୍ସ ଖୋଲି ବୁଢ଼ୀ ହାତକୁ ନୂଆ ପଚାଶ ଟଙ୍କାଟିଏ ବଢ଼େଇ ଗାଡ଼ି ଷ୍ଟାର୍ଟ ଦେଲା, ବୁଢ଼ୀ ଗଣିପୋଛି ବଳକା ପଇସା ଫେରେଇ ଦେଉଥିଲା, ସୁବୋଧ ଇଙ୍ଗିତରେ ସେତକ ରଖିଦେବା ପାଇଁ କହି ଗାଡ଼ି ଆଗକୁ ଗଡ଼େଇଲା, ଟ୍ରାଫିକ୍ ଜାମ୍ । ଆଗରେ ଏଡ୍‌ସ ରୋଗର କାରଣ ନିରାକରଣ ତଥ୍ୟ ସମ୍ବଳିତ ବିରାଟ ପୋଷ୍ଟର । ଏଇ ଦିନେ ଦୁଇ ଦିନ ଭିତରେ ବୋଧହୁଏ ଲଗାହୋଇଛି । ସେ ମୁହଁ ଉପରକୁ ଟେକି ପୋଷ୍ଟର ଉପରେ ଆଖି ବୁଲେଇ ଆଣିଲା ।

ବହୁଦିନ ଧରି ଶୂନଶାନ୍ ଓ ଖାଁ ଖାଁ ଗୋଡ଼ଉଥିବା ଘରଟା ଆଜି ପୁରିଲା ପୁରିଲା ଲାଗୁଥିଲା । ଯନ୍ତ୍ରଚାଳିତ କଣ୍ଢେଇ ପରି ହୋମୱ୍ୱାର୍କ ସାରିଦେଇ ନିଃଶବ୍ଦରେ ଡ଼ାଇନିଂ ଟେବୁଲ ପାଖରେ ଯେନତେନ ଗର୍ଭସ୍ଥ କରିଦେଇ ଚୁପ୍ ଚାପ୍ ଶୋଇଯାଉଥିବା ପିଲାଦି'ଟା ଆଜି ବିଲେଇ ଛୁଆ ଭଳି ସଂଚିତାର ଚାରିପଟେ ଘୁରି ବୁଲୁଛନ୍ତି । ତା ଅନୁପସ୍ଥିତି କାଳର ସବୁତକ ଘଟଣା ଗୋଟିକ ପରେ ଗୋଟିଏ ଦୁହେଁ ବଖାଣିବାରେ ଲାଗିଛନ୍ତି । ସଂଚିତା ବି ଉତ୍ସୁକତାର ସହ ସେସବୁ ଶୁଣୁଛି ଓ ଆବଶ୍ୟକ ସ୍ଥଳେ ମତାମତଟିଏ ବି ଦେଉଛି ।

ସେ ଘରୁ ସୁଷୁମା ଦେବୀ ପାଟିକରି କହିଲେ- "ବୋହୂ ! ପିଲାମାନଙ୍କୁ ଖୁଆଇ ପିଆଇ ଶୁଆଇ ଦେ । ସେମାନଙ୍କର ସକାଳ ସ୍କୁଲ ।"

ନୈଶ ଭୋଜନ ପରେ ଛୁଆମାନଙ୍କୁ ଶୁଆଇବାକୁ ନେଲା ସଂଚିତା । ଦୀର୍ଘ ଦିନ ହେଲା ନର୍ସିଂହୋମ୍‌ରେ ଅତନ୍ଦ୍ର ରଜନୀ ଅତିବାହିତ କରିଆସୁଥିବା ତା ଚକ୍ଷୁ ଦୁଇଟାରେ ତୃପ୍ତିର ନିଦ୍ରା ଘାରି ନେଇଥିଲା ଓ ସେ ଗଭୀର ସୁଷୁପ୍ତିରେ ଅଚେତନ ହୋଇ ପଡ଼ିଲା ।

ସୁବୋଧ ଡ୍ରଇଁରୁମ୍‌ରେ ବସିଥିଲା ଏକାକୀ । ଟିଭି ଅନ୍ କଲା । ଟିଭି ପରଦାରେ ଦୃଷ୍ଟି ନିବଦ୍ଧ ଥିଲେ ବି କାର୍ଯ୍ୟକ୍ରମର ବିନ୍ଦୁବିସର୍ଗ ସୁବୋଧକୁ ସ୍ପର୍ଶ କରୁନଥିଲା । ତା ସମ୍ମୁଖରେ ଭାସି ବୁଲୁଥିଲା ଟ୍ରାଫିକ୍ ଛକର ଏଡ୍‌ସ୍ ପୋଷ୍ଟର । ଏଡସ୍ ଭାଇରସ ସଂକ୍ରମଣର କାରଣଗୁଡ଼ିକ ବର୍ଚ୍ଛାଭଳି ଭେଦି ଯାଉଥିଲା ତା ଶରୀର ଓ ମନରେ । ସେ ଅସ୍ଥିର ହୋଇ ଉଠୁଥିଲା ବେଳକୁ ବେଳ । ଯେଉଁ ଦୁର୍ବୃତ୍ତଗୁଡ଼ାକ ସଂଚିତା ଉପରେ ଆକ୍ରମଣ କରିଥିଲେ, ସେମାନଙ୍କ ଭିତରୁ କାହାର ରକ୍ତରେ ଯେ ଏଚ୍.ଆଇ.ଭି.ପଜିଟିଭ୍ ନଥିବ ସେ କଥା କିଏ କହିବ ?

ଭୟ ଓ ବ୍ୟଞ୍ଜନାରେ ଶିହରି ଉଠିଲା ସୁବୋଧ । ମୁହୂର୍ତ୍ତକ ପୂର୍ବରୁ ଛାତି ପକେଟ୍‌ର ଯେଉଁ ମଲ୍ଲୀଫୁଲର ଭୁରୁଭୁରୁ ବାସନାରେ ସେ ପୁଲକିତ ହେଉଥିଲା ସେଇଟା ତାକୁ ଗୋଟାଏ ମଲାସାପ ପରି ମନେହେଲା । ସେ ଅନୁଭବ କରୁଥିଲା ନର୍କକୀଟ ପରି ଅସଂଖ୍ୟ ଏଡ୍‌ସ୍ ଜୀବାଣୁ ସେଥିରେ କିଲିବିଲି ହେଉଛନ୍ତି ଓ ପକେଟରୁ ବାହାରି ଆସି ଧିରେ ଧିରେ ତାର ତମାମ୍ ଶରୀର ବ୍ୟାପୀ ଯାଉଛନ୍ତି । ତାକୁ ରାମ୍ପି ବିଦାରି ହେଉଛନ୍ତି । ପିମ୍ପୁଡ଼ି ମନ୍ଦାର ଅସହାୟ ଆହାରଟିଏ ଭଳି ସେ କ୍ରମଶଃ ନିଷ୍କ୍ରିୟ ହୋଇ ପଡୁଛି ।

ସେ ଏକ ଅବ୍ୟକ୍ତ ଯନ୍ତ୍ରଣାରେ ଅସ୍ଫୁଟ ଆର୍ତ୍ତନାଦ କରି ଉଠିଲା ।

ପାଖ କୋଠରୀରୁ ସଂଚିତାର ଗଭୀର ପରିତୃପ୍ତିର ନିଦ୍ରା ସ୍ପଷ୍ଟ ବାରି ହେଇ ପଡୁଥିଲା ।



# ମୁହୂର୍ତ୍ତ

ସିନ୍ଦୁରା ଫାଟି ଆସିଲା ବେଳକୁ ଗତରାତିର ବର୍ଷା ପ୍ରକୋପ ଆଉ ନଥିଲା । ଶ୍ରାବଣର ଆକାଶ ହେଲେ ସୁଦ୍ଧା ପୂର୍ବ ଦିଗଟା ବେଶ୍ ଫର୍ଚ୍ଚା ଦିଶୁଥିଲା । ସୋରି ସୋରି ଧାନ ରଙ୍ଗର ଖରା ବିଛାଡି ହୋଇ ପଡିଥିଲା ବଣ ମୁଲକରେ, ପାହାଡର ଶୀର୍ଷ ଦେଶରେ । ଘଞ୍ଚ ଗହଳ ବନାନୀ ଭେଦି ଚେନାଏ ଖରା, ହାତୀନଈର ଛାତିକୁ ଛୁଇଁ ଯାଉଥିଲା । ରାତିସାରା ଗର୍ଜନ କରି କରି ନଦୀଟା ସକାଳକୁ ଟିକେ ନିସ୍ତେଜ ଜଣା ପଡୁଥିଲେ ବି ନଦୀ ଉପରେ ତଥାପି ଫୁଟେ ଦୁଇଫୁଟ ପାଣି । ଗାଡି ଚାଳକମାନେ ପ୍ରସ୍ତୁତ ହେଉଥିଲେ, ଆଉଟିକେ ପାଣି ଥମି ଆସିଲେ ଗାଡିରେ ଷ୍ଟାର୍ଟ ଦେବେ ।

ଗତ ଚବିଶି ଘଣ୍ଟା ଧରି ପୋଲ ଉପରେ ହାତୀଏ ଉଚ୍ଚର ପାଣି । ଉପର ମୁଣ୍ଡରେ ଲଗାଣ ବର୍ଷା । ସୁ ସୁ ଗର୍ଜନ କରି ଉତ୍ତାଳ ଗତିରେ ସାପମୁଣ୍ଡ ଦୁଇଖଣ୍ଡ କରି ବହି ଚାଲିଛି ନଦୀରେ ସୁଅ । ତା ସାଙ୍ଗକୁ ବିଜୁଳି ଘଡଘଡ଼ି । ଆକଶରେ କଳାହାଣ୍ଡିଆ ମେଘ । କିଟି କିଟି ଅନ୍ଧାର । ନଦୀର ଦୁଇ ପାଖରେ ପଛକୁ ପଛ ଲମ୍ୱିଯାଇଛି ଯାତ୍ରୀବାହୀ ବସ୍, ଟ୍ରକ୍, କାର, ମଟର ସାଇକେଲ, ବଳଦଗାଡି, ସାଇକେଲ ପ୍ରଭୃତି । ରାତି ସାରା ଭୋକ ଉପାସରେ ପଡି ରହିଛନ୍ତି ଯାତ୍ରୀ । କୋହଲା ପବନରେ ହାଡର ମଞ୍ଜ ଥରି ଯାଉଛି । ଅନିଶ୍ଚିତ ଆଶଙ୍କା ସତ୍ତ୍ୱେ ଯାତ୍ରୀମାନେ ଝଡ ବର୍ଷାର ପ୍ରକୋପ ଓ ନଦୀର ପ୍ରଚଣ୍ଡତାକୁ ଯେପରି ଉପଭୋଗ କରୁଥିଲେ ଅନ୍ଧାର ହେବା ପରେ ତାହା ଆଉ ନଥିଲା । ସମସ୍ତେ ଉଦବିଗ୍ନ ଜଣା ପଡୁଥିଲେ ।

ଶ୍ରୁତିଲେଖା ବ୍ୟସ୍ତ ହୋଇ କଣ୍ଡକ୍ଟର ଉଦ୍ଦେଶ୍ୟରେ କହିଲା- ରାତିସାରା ପାଣିଯଦି ନ କମେ ?

ବେପରୁଆ କଣ୍ଠରେ କଣ୍ଡକ୍ଟର ଭରସା ଦେଇ କହିଲା- ପାହାଡ଼ିଆ ନଈ ଅରଣା ମଈଁଷି ଭଳି ଆସିବ, ଘଣ୍ଟାଏ ଦୁଇ ଘଣ୍ଟା ପରେ ସଫା । ଇଏ କଣ ମୁହାଁଣ ମୁହଁ ନଈର ବନ୍ୟା ଯେ ଚାରି ଆଠ ଦିନ ରହିବ ?

ଉପର ମୁଣ୍ଡର ବର୍ଷା ଉପରେ ଯେ ନଦୀର ପ୍ରକୋପ ନିର୍ଭର କରୁଥିଲା ସେ କଥା ଅଜଣା ନଥିଲା ଶ୍ରୁତିଲେଖାକୁ । ତଥାପି କଣ୍ଡକ୍ଟରର ଆଶ୍ୱାସନାରେ ସେ ଟିକେ ଆଶ୍ୱସ୍ତ ହେଲା ।

-ମୋ ନାତି ତତେ ଲାଗିଲା ଲୋ ମା ମାଣିକେଶ୍ୱରୀ...ତାକୁ ତୁ ଇ ଭରସା...

ଅଶୀତି ବର୍ଷର ବୁଢ଼ୀର ଘାଗଡା କଣ୍ଠର ଆର୍ତ୍ତନାଦ ମୁହୂର୍ତ୍ତକ ପାଇଁ ବସ୍ ଯାତ୍ରୀ ମାନଙ୍କୁ ବେଦନାଗ୍ରସ୍ତ କରିଦେଲା । ସେ ଝିଅ ଓ ନାତିକୁ ଭବାନୀପାଟଣା ଡାକ୍ତରଖାନାକୁ ନେଉଥିଲା । ଦୁଇଦିନ ହେଲା ନାତିର ଆଖି ଫିଟୁନି । କି ବେମାର ତାକୁ ଧରିଛି ଯେ ଦିନ ପନ୍ଦରଟାରେ ସେ ଶୁଖି କଳାକାଠ ପଡିଗଲାଣି । ଅନ୍ନଜଳ ପାଟିକୁ ନଉନି । ସେଥିରେ ପୁଣି ବସ୍‌ଟା ଭିତରେ ରହି ସେ ଅଣନିଃଶ୍ୱାସୀ ହୋଇଗଲାଣି ।

ଦୁଇଜଣ ପୃଥୁଳକାୟ ଭଦ୍ରବ୍ୟକ୍ତି, ବୋଧହୁଏ ଅନୁକୂଳ ଭକ୍ତ । ସିଟ୍ ଉପରେ ବସି ଗୁରୁ ବନ୍ଦନା ଓ ଭଜନ କୀର୍ତ୍ତନ ପ୍ରସ୍ତୁତିରେ ଲାଗିପଡ଼ିଛନ୍ତି ।

ପିନ୍ଧାକାନି ଗଣ୍ଠିରୁ ଦୋକତା ଟିକେ ପାଟିରେ ପକେଇ ଭୋକରେ ଆଉଟୁ ପାଉଟୁ ହେଇ ଚିହିରା ଛାଡି କାନ୍ଦୁଥିବା ନାତୁଣୀଟାର ଗାଲରେ ଖୁନ୍ଦାଏ ଦେଇ ବୁଢ଼ୀଟିଏ କହୁଥିଲା-ଏ କାଳମୁଣ୍ଡିଟା ପେଟରେ କ'ଣ ଅଛି କେଜାଣି ସବୁବେଳେ ଖାଲି ଖାଇବି ଖାଇବି ଖାଇବି । ଶାଶୂର ଏ ଉଗ୍ର ରୂପ ଦେଖି ଝିଅର ମାଆ ଛୁଆଟାକୁ ନିଜ ଆଡକୁ ଆଉଜେଇ ଆଣି ପିନ୍ଧା ଲୁଗାରୁ ମେଞ୍ଚାଏ ତା ମୁହଁରେ ଚାପି ଧରିଲା ।

ଶ୍ରୁତିଲେଖା ଅତିଷ୍ଠ ହେଇପଡ଼ିଲା । ଝରକା ଅଳ୍ପ ଖୋଲି ବାହାରକୁ ଚାହିଁଲା । ସୁସଜ୍ଜିତ କାର୍‌ଟିଏର ଝାପ୍‌ସା ଆଲୁଅ ଆଖିରେ ପଡ଼ିଲା । ବରବେଶରେ ସଜ୍ଜିତ ସୌମ୍ୟ ଯୁବକଟିଏ ସେହି କାର୍ ଉପରେ କହୁଣୀ ଭରା ଦେଇ ଛିଡା ହୋଇଛି । ମୁଖମଣ୍ଡଳରେ ବ୍ୟସ୍ତତାର ଭାବ ।

ବରପାର୍ଟିରେ କିଛି ଭଦ୍ରଲୋକ ଶ୍ରୁତିଲେଖା ବସିଥିବା ବସ୍‌ରେ ବସିଥିଲେ । ସେମାନଙ୍କର କିଛି ସଂଳାପ ତା କାନରେ ପଡୁଥିଲା-ବିବାହ ଲଗ୍ନ ଗଡିଗଲା... ଆଜି ଏ ବର୍ଷର ଶେଷ ଲଗ୍ନ... ଆଜି ରାତି ବାରଟା ପରଠାରୁ ବାରବେଳା ଆରମ୍ଭ... ପୁଣି ରାତି ପାହିଲେ ଚାତୁର୍ମାସ୍ୟା... ସବୁ ଶୁଭ କାମ ବନ୍ଦ...

ଆଉଜଣେ ଭଦ୍ରଲୋକ ଉତ୍ତରରେ କହିଲେ- ଯାଉନ ମଉସା ! କୋଉ କାମ ଏମିତି କେବେ ଅଟକିଲାଣି ନା ଏବେ ଅଟକିବ ! ସର୍ବ ମଙ୍ଗଳ ଜଗନ୍ନାଥ କହିଦେଲେ ପରା ସବୁ ଅଶୁଭ ବେଳା ଶୁଭ ହେଇଯିବ.... ବାହାଘର ହବ ବା...ନଥାଉ ପଛେ ଲଗ୍ନ .. ହଉ ପଛେ ଚାତୁର୍ମାସ୍ୟା...

ଦୁଇଜଣ କୁଜିନେତା ଉଚ୍ଚସ୍ୱରରେ ଆରମ୍ଭ କରିଦେଇଥିଲେ ରାଜନୀତି ଚର୍ଚ୍ଚା । ଗାଁ ମାଛ ପୋଖରୀ ନିଲାମର ରାଜନୀତିଠାରୁ ମନୁ ସାମଲ ଓ ଘନୁ ସାମଲ ଦୁଇଭାଇଙ୍କ ଜମିଜମା ବିବାଦ... ସତୀ ମା'ର ମଝିଆ ବୋହୂ ଆତ୍ମହତ୍ୟା ମୂଳରେ ପଡିଶା ଘର ଟୋକା କାଳିଆର ଭୂମିକା... ଉତ୍ତର ପ୍ରଦେଶରେ ନରେନ୍ଦ୍ର ମୋଦି ଓ ମାୟାବତୀ ବିବାଦ ଏବଂ ମନମୋହନ ସିଂଙ୍କ ଆମେରିକା ଗସ୍ତ ପର୍ଯ୍ୟନ୍ତ । ଅତିଷ୍ଠ ହୋଇ ଉଠୁଥିଲା ଶ୍ରୁତିଲେଖା

ବେଳକୁ ବେଳ । କିଛି  ଯାତ୍ରୀ ବସ୍‌ରୁ ଓହ୍ଲେଇ ପଦଚାରଣା କରୁଥିଲେ ବାହାରେ । ହଠାତ୍ ଘଡଘଡ଼ି ଶବ୍ଦ ସହ ଅସରାଏ ଜଙ୍ଗଲି ବର୍ଷା ଅଜାଡି ହେଇ ପଡ଼ିଲା । ସତେ ଅବା ଆକାଶର ଛାତି ଫାଟି ପଡ଼ିଲା । ଝରକାର ଗ୍ଲାସ୍ ଫାଙ୍କ ଦେଇ ସର ସର ହେଇ  ବର୍ଷାଜଳ ଭିଜେଇ ଦେଲା ଶ୍ରୁତିଲେଖାକୁ । ପାଖରେ ବସିଥିଲା ଜଣେ ସୌମ୍ୟକାନ୍ତ ଯୁବକ । ଶ୍ରୁତିଲେଖାଠୁଁ ବୟସରେ ଯଥେଷ୍ଟ ସାନ ଜଣା ପଡୁଥିଲା । ଶ୍ରୁତିଲେଖା ଉପରେ ପ୍ରାୟତଃ ଢଳିପଡି ଝରକା ଯାଞ୍ଚକରି କହିଲା- ଆଉଟିକେ ଘୁଞ୍ଚି ଆସନ୍ତୁ ମ୍ୟାଡାମ୍ । ଗ୍ଲାସ୍ ଗୁଡାକ ତ ଠିକ୍‌ରେ ଦେଇ ହେଉ ନାହିଁ.... ଶଃ ଏ ସରକାରୀ ବସ୍ ଗୁଡାକର କ'ଣ ମାଆ ବାପା ଅଛନ୍ତି ?

ଯୁବକଟି ଯା ଭିତରେ ସଂପୂର୍ଣ୍ଣ ଆଉଜି ଆସିଲାଣି । ଅଶ୍ୱସ୍ତି ଅନୁଭବ କରୁଥିଲା ଶ୍ରୁତିଲେଖା । ଭାଷାରେ ନହେଲେ ବି ଅଙ୍ଗଭଙ୍ଗୀରେ ପ୍ରକାଶ କରୁଥିଲା ବିରକ୍ତି ଭାବ । ଅତ୍ୟନ୍ତ ଅପ୍ରୀତିକର ଲାଗୁଥିଲା ଯୁବକଟିର ସାନ୍ନିଧ୍ୟ ।

ହସିହସି ଯୁବକ ଜଣକ କହୁଥିଲା- ଆପଣଙ୍କୁ ଖରାପ ଲାଗୁଛି କି ମାଡାମ୍ ? ଟିକେ ମେଦୁଳ ଶରୀର ତ... ମୁଁ ଜାକିଜୁକି ହେଇ ଆଦୌ ବସିପାରେ ନାହିଁ... କ୍ଷମା କରିବେ ମାଡାମ୍... ମୋ ପାଇଁ ଆପଣ କଂଫର୍ଟରେ ବସିପାରୁ ନାହାଁନ୍ତି...

ଦାନ୍ତ ଓଠ ରାଗରେ ଚାପି ଧରି, ବାହାରକୁ ସୌଜନ୍ୟ ପ୍ରକାଶ ପୂର୍ବକ ଶ୍ରୁତିଲେଖା କହିଲା-ନାଇଁ ନାଇଁ ମୁଁ ଠିକ୍ ଅଛି । ଆପଣ ବସନ୍ତୁ ।...କିନ୍ତୁ ମନେମନେ କହିଲା-ଅଭଦ୍ର କୋଉଠିକାର ।

ଶ୍ରୁତିଲେଖା ପ୍ରାଇଭେଟ୍ କଲେଜରେ ଚାକିରି ଖଣ୍ଡେ କରେ । ପରିବାର ରହନ୍ତି ସୁଦୂର ଭୁବନେଶ୍ୱରରେ । କ୍ରମାଗତ ଦୁଇଦିନ ଛୁଟି ଓ ରବିବାର ମିଶାଇ ତିନିଦିନ ଛୁଟିରେ ଯାଉଥିଲା । ବାଟରେ କଟିଗଲାଣି ଦେଢଦିନ । ଭୁବନେଶ୍ୱର ସହ ଯୋଗାଯୋଗ ବିଚ୍ଛିନ୍ନ । ବ୍ୟସ୍ତ ହେଉଥିବେ ସ୍ୱାମୀ ଗୌରବ ଓ ପୁଅଝିଅ । ଗୌରବ ଅନେକଥର ଚାକିରି ଛାଡିଦେବାକୁ କହିଲେଣି । ଶ୍ରୁତିଲେଖା ଶୁଣି ନ ଶୁଣିଲା ଭଳି ରହେ । ସରକାରୀ ଅନୁଦାନ ଆସିଯିବ ବୋଲି ଦଶ ଏଗାର ବର୍ଷ ଗଲାଣି  । ଛାଡି ହେଉନି କି ରହିହେଉନି । ଛୁଆମାନଙ୍କୁ ଛାଡି ଆସିଲା ବେଳକୁ ତାର ଛାତି ଫାଟିଯାଏ । ଶୀଘ୍ର ଫେରିବାର ପ୍ରତିଶ୍ରୁତି ଦେଇ ଫେରିଆସେ । ପ୍ରତିଶ୍ରୁତି ପୂର୍ଣ୍ଣ କରିହୁଏ ନାହିଁ  । ସେ ଅନ୍ୟମନସ୍କ ହୋଇ ପଡୁଥିଲା ।

ଯୁବକଟି ତଥାପି କହୁଥିଲା-କ'ଣ ଭାବୁଛନ୍ତି ମାଡାମ୍ ? ରାତିଟା ଏଇ ବଣ ଜଙ୍ଗଲରେ କଟାଇବା ପାଇଁ ମାନସିକ ପ୍ରସ୍ତୁତି ଆରମ୍ଭ କରିଦିଅନ୍ତୁ । ପୋଲଟା ସେପଟରୁ ଧସିବା ଆରମ୍ଭ କଲାଣି, ଆଉ ଗାଡି ଆଗକୁ ଯିବା ସମ୍ଭବ ନୁହେଁ ।

ଆଏଁ ! ଆତଙ୍କିତ ହୋଇ ପଡିଲା ଶ୍ରୁତିଲେଖା ।

-କ'ଣ ଏବେ ହେବ ?

ଯୁବକଟି ତାର ସ୍ୱଭାବ ସୁଲଭ ଢଙ୍ଗରେ ହସି ହସି କହିଲା-ଏବେ କିଛି ହେବନାହିଁ । ଯାହା କିଛି ହେବ ରାତି ପାହିଲେ । ତା ପୁଣି ପାଣି ଛାଡିଲା ପରେ । ପୁଣି ହୋ ହୋ ହୋଇ ହସି ଉଠିଲା ଯୁବକଟି ।

ନନ୍‌ସେନ୍ସ... ମନେ ମନେ ବିରକ୍ତ ହେଲା ଶ୍ରୁତଲେଖା । କୁମ୍ଭୀର ନେଇ ମଝିନଈରେ କଲାଣି, ଯାର ହସ ବାହାରୁଛି । ବସ୍‌ରେ ବସିବା ପରଠାରୁ ବୋର୍ କରୁଛି ଲୋକଟା ।

ନିରବ ରହିଲା ଶ୍ରୁତିଲେଖା ।

ଗୋଟାଏ ଗୁରୁଗମ୍ଭୀର ଅସ୍ୱାଭାବିକ ଶବ୍ଦ ଛାତି ଥରେଇ ଭାସି ଆସିଲା । ବସଟା ସାରା ଯାତ୍ରୀଙ୍କର ଦୃଷ୍ଟି କେନ୍ଦ୍ରୀଭୂତ ହେଲା ସେଠି ।

ଶ୍ରୁତିଲେଖା ଫେରିଚାହିଁଲା ପଛକୁ । ପୃଥୁଳ ଶରୀରର ଅଧିକାରୀ ପକ୍ୱକେଶୀ ବୃଦ୍ଧଟିଏ । ବୟସ ସତୁରୀ ପଞ୍ଚସ୍ତରୀ । ଆରମ୍ଭ କରିଦେଇଛନ୍ତି ଅନୁଲୋମ ବିଲୋମ ଭ୍ରମରାସନ ।

ଗୋଡ ଦୁଇଟା ଉପରକୁ ଉଠାଇ ଆଣି ଚକା ଆସନ ପକାଇ ବସିଲା ଶ୍ରୁତିଲେଖା । ଝର ଝର ବର୍ଷା ସାଙ୍ଗକୁ ଝରକା ଫାଙ୍କରେ ଠେଲିହୋଇ ଆସୁଥିବା ମେଞ୍ଚା ମେଞ୍ଚା କୋହଲା ପବନରେ ସେ ଏକରକମ ଥରିବାକୁ ଲାଗିଲା । ଦୀର୍ଘ ଅଠର ଘଣ୍ଟା ଧରି ସହଯାତ୍ରୀ ଜଣକର କ୍ରିୟାକଳାପ ପ୍ରତି ଶ୍ରୁତିଲେଖାର ଅପ୍ରକାଶ୍ୟ ଅସନ୍ତୋଷ ଭିନ୍ନରୂପ ନେଉଥିଲା । ନିଜ ଅଜାଣତରେ ସେ ଆଉଜି ଆସୁଥିଲା ଯୁବକଟି ପାଖକୁ । ଯୁବକଟି ଅନୁଭବ କଲା ଥରୁଛି ଶ୍ରୁତିଲେଖାର ଶରୀର । ସେ ବ୍ୟସ୍ତ ହୋଇ ପଡିଲା । ନିଜ ଦେହରୁ ଓଭର କୋର୍ଟଟି ବାହାର କରି ସେ ଶ୍ରୁତିଲେଖାର ଚାରିପଟେ ବେଢେଇ ଦେଲା ।

ପ୍ରତିବାଦ କରିବା ପାଇଁ ଅବସର ପାଇନଥିଲା ଶ୍ରୁତିଲେଖା ।

-ଆରେ ଏ କ'ଣ ? ଆପଣଙ୍କ ଦେହରେ ତ ତାତି ଭର୍ତ୍ତି । ଶ୍ରୁତିଲେଖାର କପାଳ ସ୍ପର୍ଶ କରିଥିଲା ଯୁବକଟିର ପାପୁଲି ।

ଶ୍ରୁତିଲେଖା ସଂପୂର୍ଣ୍ଣ କ୍ଳାନ୍ତ । ତା ମୁଖରୁ ବାକ୍ୟ ସ୍ଫୁରୁ ନଥିଲା । ତଣ୍ଟି ଶୁଖି ଯାଉଥିଲା ଯନ୍ତ୍ରଣାରେ ।

ବାହାରେ ହାବୁକା ହାବୁକା ଥଣ୍ଡା ପବନ । ଶ୍ରୁତିଲେଖାର ଶରୀରରେ ଅସ୍ଥିର କମ୍ପନ । କିଂକର୍ତ୍ତବ୍ୟବିମୁଢ ହୋଇ ପଡିଲା ଯୁବକଟି । ତା ଅଣ୍ଟା ଚାରିପଟେ ବାମବାହୁ ଜଡେଇ ନିଜ ଉପରକୁ ଆଉଜାଇ ଆଣିଲା । ବାଧ୍ୟ ପ୍ରେମିକାଟି ପରି ଶ୍ରୁତିଲେଖା ଢଳିପଡିଲା ଯୁବକଟିର ବଳିଷ୍ଠ ବୁକୁରେ । ଯୁବକଟିର ଦୁଇବାହୁ ଆହୁରି ଜୋରରେ ଜାବୁଡି ଧରିଲା ଶ୍ରୁତିଲେଖାର ତନୁଲତାକୁ ।

ଶ୍ରୁତିଲେଖାର ଦୁଇ କୋମଳ କମ୍ପିତ ବାହୁ ସେତେବେଳକୁ ଯୁବକଟିର ବେକ ଚାରିପଟେ ଗୁଡେଇ ହେଇ ସାରିଥିଲା ।

ଦୁହେଁ ଅନୁଭବ କଲେ ଦୁହିଁଙ୍କ ଅଧରର ସ୍ପର୍ଶ ।

ବସ୍ ଭିତରଟା କିଟି କିଟି ଅନ୍ଧାର । କ୍ଲାନ୍ତ ଯାତ୍ରୀ ଗଭୀର ସୁଷୁପ୍ତିରେ ଅଚେତନ । ଦୁଇଟା ଅଚିହ୍ନା ମଣିଷର ଦେହ, ଜନ୍ମ ଜନ୍ମାନ୍ତର ପରିଚିତ ଆତ୍ମା ପରି ଏକାକାର ହୋଇ ଯାଉଥିଲେ, ସତେ ଅବା ଯୁଗ ଯୁଗ ଧରି ଦୁହେଁ ଦୁହିଁଙ୍କ ପାଇଁ ଥିଲେ ତୃଷିତ ।

ଦୁଇଟି ଦେହ, ଦୁଇଟି ମନ, ଦୁଇଟି ଆତ୍ମା ସବୁ ମିଶି ଏକ ହୋଇଗଲା ସେଇ ଅନ୍ଧାର ଭିତରେ । ମୁହୂର୍ତ୍ତକ ପାଇଁ ଆତ୍ମବିସ୍ମୃତି ଲଭିଥିଲେ ଦୁହେଁ । ଅନ୍ତରୀକ୍ଷରେ ପଥଭ୍ରଷ୍ଟ ଦୁଇ ପ୍ରତୀକ୍ଷିତ ଆତ୍ମା ଯେପରି ଯୁଗ ଯୁଗ ପରେ ପରସ୍ପରର ସନ୍ଧାନ ପାଇଗଲେ ।

ରାତି ପାହିଲା ବେଳକୁ ନଦୀର ଆଉ ପ୍ରକୋପ ନଥିଲା । ରାତିର ଥମ୍ ଥମ୍ ଆକାଶଟା ବି ସକାଳକୁ ବେଶ୍ ହାଲ୍କା ହାଲ୍କା ବୋଧ ହେଉଥିଲା ।

ଯୁବକଟିର ସାନ୍ନିଧ୍ୟ ଆଉ ଶ୍ରୁତିଲେଖାକୁ ଲାଗୁନଥିଲା ଅସହ୍ୟ ଅଥବା ଅପ୍ରୀତିକର । ଦୁହେଁ କିନ୍ତୁ ଥିଲେ ସଂପୂର୍ଣ୍ଣ ନିରବ । ସେଇ ନିଃଶବ୍ଦ ନିବିଡତା ଭିତରେ ପରସ୍ପରକୁ ଯେଭଳି ଉନ୍ମୁକ୍ତ କରିପାରୁଥିଲେ, ପୃଥିବୀର କୌଣସି ଭାବସମୃଦ୍ଧ ଶବ୍ଦ ବୋଧହୁଏ ତାହା ପାରି ନଥାନ୍ତା । ନିରବତାର ଭାଷା ଯେ କେତେ ତୀବ୍ର, ଆବେଗମୟ,ପ୍ରଗଳ୍ଭ, ଦୁହେଁ ପ୍ରଥମ କରି ଅନୁଭବ କରୁଥିଲେ ବୋଧହୁଏ ।

ପୃଥିବୀରୁ ବିଲୋପ ହୋଇଯାଆନ୍ତା କି ସବୁ ଅକ୍ଷର, ସବୁ ଶବ୍ଦ, ସବୁ ଭାଷା । ଦୁହେଁ ପାଲଟି ଯାଆନ୍ତେ କି ମୂକ, ନିଷ୍ପନ୍ଦ, ଶବ୍ଦହୀନ । ସେମାନଙ୍କ ଭାବାଚ୍ଛନ୍ନ ମୁହୂର୍ତ୍ତମାନେ ବୋଧହୁଏ ଏମିତି କିଛି କାମନା କରୁଥିଲେ ।

ପୋଲ ଉପରେ ତଥାପି ଫୁଟେ ପାଣି ଥିଲେ ବି ଗାଡି ଗୁଡାକ ଧୀରେ ଧୀରେ ଛାଡିବା ଆରମ୍ଭ କରିଦେଇଥିଲେ ଚାଳକମାନେ । ଲକ୍ଷ୍ୟସ୍ଥଳ ନିକଟତର ହେଲା ।

ଯୁବକଟି ଅତ୍ୟନ୍ତ ସଂକୁଚିତ ହୋଇ କହିଲା-ସରି ମ୍ୟାଡାମ୍...

ଶ୍ରୁତିଲେଖା ମୁହଁରୁ ଭାଷା ସ୍ଫୁରୁ ନଥିଲା । ଯୁବକଟିର ପାପୁଲି ସ୍ପର୍ଶ କରି ସେ ମୃଦୁ ଚାପଟିଏ ଦେଲା ।

କ'ଣ ଥିଲା ସେ ସ୍ପର୍ଶର ଭାଷା ?

କ୍ଷମା ? କୃତଜ୍ଞତା ? ସରାଗ ? ସ୍ୱୀକୃତି ? ଘୃଣା ? ବ୍ୟଞ୍ଜନା ? ପ୍ରେମ ? ଅନୁରାଗ ? ନା ଏ ସବୁର ଏକ ମିଶ୍ର ରାଗ ?

ଯୁବକଟି ଶ୍ରୁତିଲେଖାର ଭ୍ୟାନିଟି ଖୋଲିଲା । ନିଜ ପକେଟରୁ ବାହାର କଲା ଇଷତ୍ ଗୋଲାପୀ ରଙ୍ଗର ଭିଜିଟିଂ କାର୍ଡଟିଏ । ସେଇଟିକୁ ଭ୍ୟାନିଟି ବ୍ୟାଗ୍ ଭିତରେ ରଖି ବ୍ୟାଗ୍‌ଟି ବଢେଇ ଦେଲା ଶ୍ରୁତିଲେଖା ହାତକୁ ।

ସେମିତି ଅପରାଧୀ ଅପରାଧୀ ଭାବ ନେଇ କହିଲା- "ଆପଣଙ୍କ ଫୋନ୍ ନମ୍ବରଟା ଦେବେନି ?"

ଅନ୍ୟମନସ୍କ ହୋଇ ପଡୁଥିଲା ଶ୍ରୁତିଲେଖା ।

ଯୁବକଟି ଆହୁରି ସାଂକୁଡି ଯାଇ କହିଲା- "ବେଶ୍...ଆପଣ ଯଦି ନ ଚାହୁଁଛନ୍ତି ତେବେ ଥାଉ..."

ଶ୍ରୁତିଲେଖା କଣ୍ଠ ଝାଡି ନରମ ଗଳାରେ କହିଲା-ଲେଖନ୍ତୁ...

ଯୁବକଟି ଶ୍ରୁତିଲେଖା ଡାକୁଥିବା ନମ୍ବର ଯତ୍ନର ସହିତ ନିଜ ମୋବାଇଲରେ ଫିଡ୍ କଲା । ବସ୍ ରହିଲା ଷ୍ଟାଣ୍ଡରେ । ଦୁହେଁ ଓହ୍ଲେଇ ପଡିଲେ ବସରୁ । ବିଦାୟ ମୁହୂର୍ତ୍ତ ବି ଥିଲା ସଂପୂର୍ଣ୍ଣ ନିରବ, ନିଷ୍ପନ୍ଦ ।

ଶ୍ରୁତିଲେଖା ରିକ୍ସା ଧରିଲା । ରିକ୍ସା ଚକ ଗଡି ଚାଲିଲା ଆଗକୁ ।

-ଏଇ ଆଗ ଗଳିର ଦ୍ୱିତୀୟ କୋଠାଟା ।

ନିର୍ଦ୍ଦିଷ୍ଟ ସ୍ଥାନରେ ରିକ୍ସା ଅଟକିଲା । ହାତ ବ୍ୟାଗ୍‌ରୁ ରିକ୍ସାବାଲାର ପାଉଣା ବାହାର କରୁ କରୁ ଗୋଲାପୀ ଭିଜିଟିଂ କାର୍ଡଟି ଦୃଷ୍ଟି ପଥାରୁଢ଼ କଲା ଶ୍ରୁତିଲେଖାର । କାର୍ଡଟିକୁ ଦୁଇ ଟିପରେ ଉଠେଇ ଜଡେଇ ଧରିଲା କେତୋଟି ମୁହୂର୍ତ୍ତ । ତାପରେ ସେଇଟିକୁ ମୋଡି ମକଚି ରାସ୍ତା କଡର ଡ୍ରେନ୍‌କୁ ଲକ୍ଷ୍ୟ କରି ଫିଙ୍ଗି ଦେଲା ବେଳେ ଶ୍ରୁତିଲେଖାର ମନେ ହେଉଥିଲା, ସତେ ଅବା ନିଜ ହାତରେ ନିଜ ଛାତିକୁ ରାମ୍ପି ବିଦାରି କଲିଜାଟିକୁ ବାହାର କରି ଆଣିଲା ଓ ଫିଙ୍ଗିଦେଲା ଡ୍ରେନ୍ ଭିତରକୁ । ତା ଶରୀରର ସବୁତକ ରକ୍ତ ସେଇ କଲିଜା ସହ ନିଗିଡି ଡ୍ରେନ୍‌ଟାକୁ ରକ୍ତାକ୍ତ କରିଦେଲା । ଏବଂ ରକ୍ତ ହୀନ କ୍ଷତାକ୍ତ ଜଡ ପିଣ୍ଡଟାକୁ ଘୋଷାରି ଘୋଷାରି ସେ ଗେଟ୍ ଖୋଲି ଭିତରକୁ ପଶିଲା ।

ଶ୍ରୁତିଲେଖା ଚାଲିଗଲା ପରେ ଯୁବକଟି କିଛି ସମୟ ବସ୍‌ଷ୍ଟାଣ୍ଡର ବେଞ୍ଚରେ ବସି ରହିଲା । ଦୁଇ ଦିନ ପରେ ଶ୍ରୁତିଲେଖା ଦେଇଥିବା ନମ୍ବରଟିକୁ ଡାଏଲ୍ କଲା । ସେ ପଟରୁ ଏକ ସୁଲଳିତ ନାରୀକଣ୍ଠ ଭାସି ଆସିଲା... ।

ଏହି ନମ୍ବରଟି କାହାରିକୁ ଦିଆ ଯାଇନାହିଁ... ଦୟାକରି ନମ୍ବରଟିକୁ ଆଉଥରେ ଯାଞ୍ଚ କରନ୍ତୁ... ।



# କଞ୍ଚା ଡାହାଣୀ

ଏଭ୍ରି ଷ୍ଟ୍ରଙ୍ଗ ଓମ୍ୟାନ୍ ଇଜ୍ ଏ ଉଇଚ୍ । ପ୍ରତ୍ୟେକ ଶକ୍ତିମତୀ ମହିଳା ଜଣେ ଜଣେ ଡାହାଣୀ । ଉକ୍ତିଟି କାହାର ଥିଲା, କୋଉଠି ପଢିଥିଲି ସଠିକ୍ ମନେ ପଡୁନି କିନ୍ତୁ ଚମ୍ପାକୁ ତା' ଶାଶୁଘର ଲୋକେ ଡ଼ାହାଣୀ କହୁଛନ୍ତି ଜାଣିବା ପରେ ପଢିଥିବା ବାକ୍ୟଟିର ସତ୍ୟତା ମୁଁ ତିଳେ ତିଳେ ଅନୁଭବ କରୁଥିଲି । ଚମ୍ପା ତା' ପରିସୀମା ଭିତରେ ସେମିତି ଥିଲା ଶକ୍ତିମତୀ ମହିଳାଟିଏ । ସେ ଯେବେ ବି ଆମ ଗାଁକୁ ଆସେ ଆମ ଘରେ ଟିକେ ମୁହଁ ନମାରି ଯାଏ ନାହିଁ ଆବଶ୍ୟକ ଥାଉ କି ନଥାଉ ।

ସେଦିନ ସେମିତି ସେ ଆସିଥିଲା । କିନ୍ତୁ ଦିଶୁଥିଲା ଭାରି କରୁଣ ଓ ଚିନ୍ତାଗ୍ରସ୍ତ । ଯେଉଁ ଉଜ୍ଜ୍ୱଳତା ଚମ୍ପାକୁ ଷ୍ଟ୍ରଙ୍ଗ ଓମ୍ୟାନ ବା ଶକ୍ତିମତୀ ମହିଳା ବୋଲି ସାବ୍ୟସ୍ତ କରୁଥିଲା, ସେଥିରୁ କାଣିଚାଏ ବି ସେଦିନ ତା' ଚେହେରାରେ ନଥିଲା । ଆମମାନଙ୍କ ସହ ଗପୁଥିଲା ବେଳେ ସେ ଭାରି ଅନ୍ୟମନସ୍କ ଜଣା ପଡୁଥିଲା । ହଠାତ୍ ତାର କ'ଣ ହେଲା କେଜାଣି ଝଡ଼ପରି ସେ ବାପାଙ୍କ କୋଠରୀ ଭିତରକୁ ପଶିଗଲା । ବାପା ଖଟ ଉପରେ ଅଧାଶୁଆ ହୋଇ ଖବର କାଗଜଟିଏ ଓଲଟାଉ ଥିଲେ । ସେ ଲଥ୍‌କରି ବସି ପଡ଼ିଲା ଚଟାଣରେ, ତାଙ୍କ ପାଦ ପାଖରେ ।

ବାପା ପେପର୍ ଉପରୁ ମୁହଁ ଉଠାଇ କହିଲେ, କ'ଣ ହେଲା ଚମ୍ପା ? ସେ କାନ୍ଦ କାନ୍ଦ ହୋଇ ନରମ ସ୍ୱରରେ କହିଲା । ମୁଁ ଭାରି ଅସୁବିଧାରେ ପଡ଼ିଯାଇଛି । ମତେ ଟିକେ ସାହାଯ୍ୟ କର ଦାଦା ! (ଗାଁ ହିସାବ ଅନୁସାରେ ସେ ମୋ ବାପାଙ୍କୁ ଦାଦା ଡ଼ାକେ) ।

ବାପା ଟିକେ ହସି ଦେଇ କହିଲେ- "ଦୂର୍ । ତୋର ପୁଣି କ'ଣ ସାହାଯ୍ୟ ଦରକାର ? ତୁ ତ ନିଜେ ଅନ୍ୟମାନଙ୍କର ସାହାରା ।" ବାପାଙ୍କ କଥା ତା' ଉପରେ କିଛି ପ୍ରଭାବ ପକାଇଲା ପରି ମନେ ହେଲାନାହିଁ । ସେ ଅଧୈର୍ଯ୍ୟ ହୋଇ କହିଲା, ଦାଦା ତମେ ଏତେ ଔଷଧି ମୌଷଧି ଜାଣିଛ, ମୋ ଅଶୁଭ ଦୃଷ୍ଟି କାଟିବା ପାଇଁ କ'ଣ ଟିକେ ଦିଅନ୍ତନି ?

ବାପା ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଚାହିଁଲେ । ସେ ଅସହାୟ ହୋଇ କହିଲା । "ମୋର ଏ ଆଖି ଦୁଇଟା ବଡ଼ ଅଶୁଭ ଦାଦା । ମୁଁ ଯୋଉ ଛୁଆକୁ ଦେଖୁଛି ସେ ଶୁଖି କଣ୍ଟା ହେଇଯାଉଛି, ଖିଆପିଆ ଛାଡ଼ି ଦେଉଛି । ରାଣଖାଇ କହୁଛି ଦାଦା, ମୁଁ କେବେ ବି ଚାହେଁନା ଛୁଆଗୁଡ଼ାକ ଏମିତି କଷ୍ଟ ପାଆନ୍ତୁ ।"

ବାପା ବିରକ୍ତ ହେଇ କହିଲେ, ଚୁପ୍! କିଏ ତୋ ମୁଣ୍ଡରେ ଏସବୁ ଭର୍ତ୍ତି କରିଛି ପାଗଳିଟା । ଚମ୍ପା ନିରୁତ୍ତପ୍ତ କଣ୍ଠରେ କହିଲା-ମୋ ଶାଶୁ କହୁଥିଲେ, ମୋ ଦେହରେ କୁଆଡ଼େ ଡାହାଣୀ କଳା ଅଛି । ମତେ ବିଶ୍ୱାସ କର ଦାଦା ! ଏସବୁ ମୁଁ ଜାଣିଶୁଣି କିଛି କରୁନି ।

ବାପା ଗମ୍ଭୀର ହୋଇ କହିଲେ, ତୋ ଭଳି ଝିଅଠୁଁ ମୁଁ ଏମିତି ଶୁଣିବି ବୋଲି କେବେ ଆଶା କରି ନଥିଲି । ଏଗୁଡ଼ା ସଂପୂର୍ଣ୍ଣ ଅନ୍ଧ ବିଶ୍ୱାସ । ଦୃଷ୍ଟିଫୃଷ୍ଟି ଏସବୁ ମନର ଭ୍ରମ । ଚିକିତ୍ସାଶାସ୍ତ୍ରରେ ଏପରି କିଛି ନାହିଁ । ଏସବୁ ମୁର୍ଖମାନଙ୍କର କଥା । ଦୁର୍ବଳ ଲୋକମାନଙ୍କର ଭାଷା । ତୁ ନିଶ୍ଚିନ୍ତ ରହ ।

ସେ ବାପାଙ୍କ କଥାରୁ କେତେ ଆଶ୍ୱାସନା ପାଇଲା କେଜାଣି, କିନ୍ତୁ ତାଙ୍କ କୋଠରୀରୁ ବାହାରି ଆସିବା ବେଳକୁ କିଛି ପରିମାଣରେ ସ୍ୱାଭାବିକ ଲାଗୁଥିଲା । ଆମେ ସବୁ ଅବାକ୍ ହୋଇ ତାକୁ ଚାହିଁ ରହିଥିଲୁ । ସେ ତା ଶୁଖିଲା ମୁହଁରେ ହସର କ୍ଷୀଣ ରେଖାଟିଏ ଖେଳେଇ ଆମଠାରୁ ବିଦାୟ ନେଇଗଲା । ସେଦିନ ତାର ସେ କରୁଣ ହସ ଟିକକ କାହିଁକି କେଜାଣି, ମୋତେ ଗଭୀର ବେଦନା ବୋଧରେ ଦ୍ରବୀଭୂତ କରି ପକାଇଲା । ତାର ପନ୍ଦର ଦିନ ପରେ ଦିନେ ଆମ ଗାଁରେ ଖବର ପହଞ୍ଚିଲା, ଚମ୍ପା ପାଗଳି ହେଇଯାଇଛି ।

ଚମ୍ପା ଆମ ଗାଁର ବୋହୂ ନଥିଲା, ଥିଲା ଝିଅ । ଭଲ ଝିଅ ଥିଲା ସେ । ପୁରୁଷ ନଥିବା ଘରେ ଝିଅ ବୋହୂ କି ପିଲା ପିଚିକା ଜରବାଧିକା ପଡ଼ିଲେ ଖୋଜ ନ ଖୋଜ ସିଏ ଆସି ହାଜର ହେଇ ଯାଉଥିଲା । ପୁରୁଷ ଲୋକମାନେ ଯିଏ ଯାହାର କାମ ଧନ୍ଦାରେ ଯାଇଥିଲେ, କାହା ବାଡ଼ିରେ ଷଣ୍ଢ ପଶିଗଲେ, ଡ଼କା ପଡୁଥିଲା ଚମ୍ପାକୁ । ସହରରୁ କେହି ଅଚିହ୍ନା ଅଜଣା ଲୋକ ଗାଁକୁ କିଛି ସୂଚନା ପାଇଁ ଆସିଲେ ତ ସେମାନଙ୍କୁ ତଥ୍ୟ ଦେଉଥିଲା ଚମ୍ପା । କେବଳ ସେତିକି ନୁହେଁ, ଶାଶୁ ବୋହୂ କଳି, ନଣନ୍ଦ ଭାଉଜ ମାନ ଅଭିମାନ, ଯା' ଯା' ଭିତରେ ବାଦ-ଛେଦ, ସ୍ୱାମୀ, ସ୍ତ୍ରୀଙ୍କ ମନୋମାଳିନ୍ୟ, ଏସବୁ ଯେମିତି ଥିଲା ତାର ବ୍ୟକ୍ତିଗତ ସମସ୍ୟା । ଏଗୁଡ଼ିକୁ ତୁଟାଇବା ପାଇଁ ସେ ଅଣ୍ଟାଭିଡ଼ି ବାହାରି ପଡୁଥିଲା । ଦୋଷ ଥାଉ କି ନଥାଉ ସେ ସବୁବେଳେ ନେଉଥିଲା ଦୁର୍ବଳର ପକ୍ଷ । ଦରକାର ପଡ଼ିଲେ ସବଳ ପକ୍ଷକୁ ଭଲକରି ଦୁଇ ଚାରି ପଦ ଶୁଣେଇବି ଦେଉଥିଲା । କେହି କେହି ତାର ଏ ବ୍ୟବହାରକୁ ଖଙ୍ଗସ ପାଇଲେ ବି ତାର ଛନ୍ଦ କପଟ ହୀନ ନିରପରାଧ ନିରୀହ ପଣିଆ ପାଖରେ ମୁଣ୍ଡ ନୁଆଇଁ ଦେଉଥିଲେ । ଭୁଲ୍ କରିଥିବା ମଣିଷଟା ଉପରେ ରାଉରାଉ ହେଇ ବକି ଯାଉଥିଲା ଚମ୍ପା ଏବଂ ପରମୁହୂର୍ତ୍ତରେ ତା' ପାଖରେ ପୁଷି ବିଲେଇ ଭଳି ଘଷରି ହେଉଥିଲା । ଆମ୍ବଟାଏ, ପିଜୁଳି ଦୁଇଟା କି କାକୁଡ଼ି କଷିଟା ଧରେଇ ହେଉଥିଲା ତା' ପୁଅ ହାତରେ । କେତେବେଳେ ବା ଟାଣି ଓଟାରି ବସେଇ ତା ମୁଣ୍ଡରୁ ଉକୁଣୀ ଦୁଇଚାରିଟା ଖୋଜି ଆଣି ପାନିଆ ଉପରେ ଥୋଇ ମୁଣ୍ଡ ଟୁଙ୍ଗାରି ଉଁ-ଉଁ ଶବ୍ଦରେ ମାରି ହେଉଥିଲା । ମୁଣ୍ଡରେ ସୁନ୍ଦର କରି ଖୋସାଟିଏ ପାରି ଦେଉଥିଲା । ଏଥିରେ କୋଉ ମଣିଷଟା ଭଲା ତା' କଥାକୁ ଧରିବସନ୍ତା ଯେ !

ଏସବୁ ବାପଘର ଝିଅ ପାଇଁ ସାଜେ । ଶାଶୁଘର ବୋହୂ ପାଇଁ ଏସବୁ ହେଉଚି ଖରଖରିପଣ, ଢ଼ବଢ଼ବୀ ଗୁଣ । ଚମ୍ପା ଯେତେବେଳେ ବାହା ହୋଇ ଶାଶୁଘରେ ପାଦ ଦେଲା ତାର ସବୁ ଭଲ ଗୁଣ ଅବିଗୁଣ ହୋଇଗଲା । ଶାଶୁଘର ଲୋକ ତାକୁ ନାକ ଚିଅଢ଼ା କାନ ଚିଅଢ଼ା କଲେ । ମୁହଁ ମୋଡ଼ିଲେ । ବୋହୂଟା ସଣୁଣା ଜାଣିନାହିଁ । ଉଦ୍ଦଣ୍ଡୀଟା, ବେସରମୀଟା, ସିଏ ବା କ'ଣ କରନ୍ତା ଯେ । କାହାର ବିପଦ ଆପଦ ପଡ଼ିଲେ ତାକୁ ଲାଗେ କେହି ଯେମିତି ତା ପାଇଁ ପଦ୍ମତୋଳା ଡ଼ାକୁଛି । ସେ ଅସମ୍ଭାଳ ହୋଇପଡ଼େ । ସିଏ ଯେ ଭୁଆଷୁଣୀଟା, ସେ କଥାକୁ ତାର ଖାତିର ନଥାଏ । ସବୁ କାମଦାମ ପଛରେ ପକାଇସେ ସେଇ ଦୁଃଖୀ ମଣିଷ ପାଖକୁ ଧାଇଁଯାଏ । ଶାଶୁ ନଣନ୍ଦ ଯେତେ ଆକଟିଲେ ବୋଲ ମାନେ ନାହିଁ । ଗାଁ ଲୋକ ଛି' ଛାକର କରନ୍ତି । ଗାଧୁଆ ତୁଠରେ କଥାପଡ଼େ । ଇୟେ କି ଅଭିଲା କଥା । ଭୁଆଷୁଣୀଟା, ଲାଜ ନାହିଁ କି ସରମ ନାହିଁ, ଗାଁ ସାରା ଟୋ-ଟୋ ହେଇ ବୁଲୁଛି ।

କଥାଟା ଏତିକିରେ ଛିଡ଼ିଲା ନାହିଁ । ଧୀରେ ଧୀରେ ଭିନ୍ନ ମୋଡ଼ ନେଲା । ସିଏ ଯେ କେବଳ ଦିନରେ ସାହି ସାହି ବୁଲୁଛି, ସେତିକି ନୁହେଁ, ନିଶୁନ୍ ରାତିରେ ସିଏ ପଦାଆଡୁ ଗୁଡୁରୁ ଗାଡୁରୁ ହେଇ ଆସୁଥିବାର ଲୋକ ଦେଖିଲେଣି । ଗର୍ଭିଣୀ ବୋହୂଟାକୁ ସେଦିନ ଫୁଲବୋଉ ରାତି ଅଧରେ ପଦାଆଡେ ନେଇଥିଲା । ଉଭା ଲଙ୍ଗଳା ହେଇ ପଡିଆ ମଝିଟାରେ ଦୁଇଗୋଡ ଉପରକୁ ଟେକି ସୁଡ୍‌ସାଡ୍ ହେଇ ଚମ୍ପା ମଇଳା ଚରୁଥିବା ଦେଖି ବୋହୂଟା ଏମିତି ହାଉଳି ଖାଇଗଲା ଯେ ପେଟରେ ଥିବା ଚାରିମାସର ପିଲା ସେଇଠି ଖସିପଡ଼ିଲା । ଦେଖେଇ ଶିଖେଇ ଫୁଲ ବୋଉ ଚମ୍ପାକୁ କେତେ ନା କେତେ କାଟିଲା, ସମ୍ପିଲା । ତାର କିନ୍ତୁ କିଛି ହେଇନାହିଁ, ସିଏ ତ ଡାହାଣୀ, ତାର ପୁଣି ହବ କ'ଣ ?

ଅଧାରାତିରେ ଚମ୍ପା ପଡିଆରୁ ଆସି ଚଉରା ପାଖରୁ ତୁଳସୀ ପତ୍ର ଖାଏ । କଥାଟା ଗାଁଠାରୁ ତିନି ଗାଁ ପର୍ଯ୍ୟନ୍ତ ପ୍ରଘଟ ହେଇ ସାରିଲାଣି । ଟୋକା ଟୋକାଳିଆ କେତେଟା ରାତି ରାତି ଅନିଦ୍ରା ରହି ତାକୁ ଜଗି ବସିଲେ । ତା ପିନ୍ଧା ଲୁଗାକୁ ଫିଙ୍ଗିଦେଇ ସେ ଯେତେବେଳେ ମଇଳା ଚରିବାକୁ ଯିବ, ଏମାନେ ତା ଲୁଗାରେ ନିଆଁ ଚେଙ୍କ ଦେବେ । ସିଏ କୁଆଡେ ଚକ୍ଷୁବନ୍ଧନ ବି ଜାଣିଥିଲା । ସେଇଥି ପାଇଁ ଦିନେ ହେଲେ ବି ସେ ଏ ଟୋକାଦଳଙ୍କ ହାବୁଡ଼ରେ ପଡ଼ିଲା ନାହିଁ ।

ମାଆମାନେ ଉତ୍ତିଆଣୀ ଛୁଆଙ୍କୁ ତା ପାଖରୁ ଲୁଚେଇଲେ । ଯାହା ଉପରେ ତା'ର ଦୃଷ୍ଟି ପଡ଼ିଲା, ସେ ଛୁଆ ଶୁଖିଶୁଖି ଗଲା । ଖାଲି ତାରି ଦୃଷ୍ଟିକୁ କାଟିବା ପାଇଁ ଛୁଆମାନଙ୍କ ହାତରେ ବେକରେ ମାଳମାଳ ତେଉଁରିଆ ଆଉ ତାବିଜ ।

ସେ ଭାରି ଛୁଆରଙ୍କୁଣୀ ଥିଲା । ବାହାଘରର ସାତଆଠ ବର୍ଷ ବିତି ଯାଇଥିଲେ ସୁଦ୍ଧା ତା' କୋଳ ଶୂନ୍ୟ ଥିଲା । ଶାଶୁ ବ୍ୟସ୍ତ ହେଉଥିଲେ ବଂଶରକ୍ଷା ପାଇଁ । ଦିଅଁ ଦେବତା ମାନସିକ କରୁଥିଲେ । ଉପାସ ବ୍ରତ ରଖୁଥିଲେ, କିନ୍ତୁ ତାକୁ ଏମିତି ପୂଜାବ୍ରତ ଧ୍ୟାନଧାରଣା

କରିବା କେହି ଦେଖିନାହାନ୍ତି । ମାତୃତ୍ୱ ପାଇଁ ତାର ବ୍ୟାକୁଳତା ଅଶିଣର ଗଙ୍ଗଶିଉଳୀ ଭଳି ଅନ୍ୟତ୍ର ବିଛାଡ଼ି ହେଇ ପଡୁଥିଲା । ଗାଁ ଦାଣ୍ଡରେ ଧୂଳି ଖେଳୁଥିବା ମଇଳା ମକନ୍ଦରା ପିଲାମାନଙ୍କୁ ଭୂଇଁରୁ ଉଠେଇ ତା' ସଫାକାନିରେ ସେମାନଙ୍କ ଦେହ ଝାଡ଼ି ଦେଉଥିଲା । ନାକରୁ ବୋହି ଯାଉଥିବା ପାଣିକୁ ବାଁ ହାତର ଦୁଇଟିପରେ ପୋଛିଦେଇ ପଣତ ବୁଲେଇ ଆଣୁଥିଲା । ଛାତିରେ ଜାବୁଡ଼ି ଧରି ବୋକ ଦେଉଥିଲା । ଦରନଙ୍ଗଳା ଭୋକିଲା ପିଲାକୁ ଘରକୁ ଟାଣି ନେଇ କ'ଣ ଦି'ଟା ତା' ମୁହଁରେ ଗୁଞ୍ଜି ଦେଉଥିଲା । ଆଖିରେ ଆଙ୍କି ଦେଉଥିଲା କଜଳର ରେଖା । ଛୁଆଗୁଡ଼ାକ ବି ତାକୁ ଆଦରି ନେଉଥିଲେ ।

ଶାଶୁ ଦେଖେଇ ଶିଖେଇ କହୁଥିଲେ, ଅଭିଲାପଣ । ଅଫଳନ୍ତି ଗଛ । ତା' ହୃଦତନ୍ତ୍ରୀକୁ ଆଘାତ କରୁଥିଲେ ଜାଣିଶୁଣି । ତା' ଭିତରଟା ରକ୍ତାକ୍ତ ହୋଇଯାଉଥିଲା । ଜୀବନକୁ ଆପଣେଇବାର ସବୁ ଆବେଗ ଅସାର ହୋଇପଡୁଥିଲା ।  ଆକାଶ ଛୁଉଁଥିଲା, ତାର ଅସହାୟତା ।

ଏ ଭାବ କିନ୍ତୁ ତାକୁ ବେଶି ସମୟ ଆଛନ୍ନ କରେ ନାହିଁ । ପୁଣି ସହଜ ହେବାକୁ ଚେଷ୍ଟାକରେ । ନିଜ ଜୀବନର ବ୍ୟର୍ଥତା (ଯାହା ତା ହାତର କଥା ନୁହେଁ) ସବୁକୁ ସେଇ ଅଦୃଶ୍ୟ ଶକ୍ତି ପାଖରେ ଅଜାଡ଼ି ଦିଏ । ଦୁଃଖ, ଅବସାଦ, ଗ୍ଲାନି ବୋଧକୁ କଣ୍ଟା ଆଡେଇଲା ଭଳି ଆଡ଼େଇ ପଛକୁ ଫିଙ୍ଗିଦିଏ । ବାଟଚଲା ଛୁଆଙ୍କୁ ଆଦର କରେ, ଜୀବନଠୁଁ ବଳି ସେମାନଙ୍କୁ ଭଲପାଏ ।

ଡାହାଣୀକୁ ପରପିଲା ସୁନ୍ଦର । କିଏ ଏ ପଦଟା ତା'ପାଇଁ ଯୋଡିଦେଲା କେଜାଣି, ସତକୁ ସତ ସେ ଲୋକଙ୍କ ଦୃଷ୍ଟିରେ ଛୁଆଖାଇ ଡାହାଣୀ ହେଇଗଲା ।

କଥାଟା ଏତେ ସାଂଘାତିକ ହୋଇ ନଥାନ୍ତା ଯଦି ରଘୁଆ ମାଆ ନାତି ଦୁଇମାସ କାଳ ସଢ଼ିସଢ଼ି ଆଖି ବୁଜି ନଥାନ୍ତା । ରାଜା ପୁଅଭଳି ଗୋରା ଟକ୍‌ଟକ୍ ଥାକୁଲୁ ଥାକୁଲୁ ଚେହେରା । କଅଁଳ ଗାଧୁଆ ବେଳ । ଛୁଆଟାକୁ ତା' ମାଆ ତେଲ ହଳଦୀ ମାଖି ଗାଧେଇ  ଦେଇ ଅଗଣାରେ ସପ ଖଣ୍ଡକରେ ଗଡେଇ ଦେଇ କ୍ଷୀର ବୋତଲଟା ସଜାଡ଼ି ଆଣିଲା ବେଳକୁ ଦେଖିଲା ଚମ୍ପା ତାକୁ କୋଳେଇ ନଉଛି । ପାଏ ରକତ ଶୁଖିଗଲା ତା' ଛାତିରୁ  । କାଳିସୀ ଲାଗିଲା ପରି ସେ ତା କୋଳରୁ ଛୁଆଟାକୁ ଛଡେଇ ନେଇ ପ୍ରାଣ ବିକଳରେ ଚିତ୍କାର କରି ଉଠିଲା ।

"କିଏ ତତେ କହିଲା ମୋ ଛୁଆକୁ ଛୁଇଁବାକୁ ? ଯା ଯା ଏଠୁ । ଆଉ ଦିନେ ମୋ ଦୁଆର ମାଡ଼ିଛୁ ତ ଦେଖିବୁ । କଞ୍ଚାଖାଇ ଡାଆଣୀ ।"

ହତ ଚକିତ ହୋଇଗଲା ଚମ୍ପା । ସାପ ଗୋଡ଼େଇଲା ପରି ଏକମୁହାଁ ହୋଇ ସେ ଫେରି ଆସିଲା ଘରକୁ । ଶାଶୁଙ୍କ ପାଖରୁ କିଛି ସାନ୍ତ୍ୱନା ଆଶା କରୁଥିଲା । ଶାଶୁ ସବୁ ଶୁଣି କହିଲେ- "ମାଇକିନିଆ ଝିଅ । କାହା ଦେହରେ କି କଳା ଅଛି କିଏ ଜାଣିଛି ? ଲୋକ ଯଦି ଖଙ୍ଗସ ପାଉଛନ୍ତି ତ ତୁ ତାଙ୍କ ଛୁଆଙ୍କଠୁ ଦୂରେଇ ରହ । ନିଜେ ତ ପଡ଼ିଆ ଭୂଇଁ । ପର ଛୁଆଙ୍କୁ ଧେଇ ଧେଇ କଲେ କ'ଣ ଆମ ଦୁଃଖ ଯିବ ?'' ଶାଶୁ ମୁହଁ ମୋଡ଼ିଲେ ।

ସେ ଶକ୍ତ ଆଘାତ ପାଇଲା । ଶାଶୁ ଯେମିତି ତା ଦୃଷ୍ଟି କଥା ଆଗରୁ ଜାଣିଥିଲେ । ଏଇ ଡାହାଣୀ କଳା ପାଇଁ କ'ଣ ଠାକୁରେ ତା' କୋଳରେ ବକଟେ ଦେଉନାହାନ୍ତି ? କେମିତି ଏ କଳଙ୍କ ଛାଡିବ ତା' ଦେହରୁ ? ସେ କେମିତି ଅନ୍ୟମାନଙ୍କୁ ବୁଝେଇବ ଯେ ମଣିଷ ତ ମଣିଷ, ଚଢେଇ ଚିରୁଗୁଣୀ ଛୁଆଙ୍କର ବି ଦିନେ ସେ ଅମଙ୍ଗଳ ପାଞ୍ଚିନି । ନିଜର ନଥାଉ ପଛେ, ପରପିଲାର ମୁହଁରେ ହସ ଟିକେ ଦେଖିଲେ ତା ମନ ପୂରିଉଠେ । ଆପଣା ଜୀବନର ଦୁଃଖ, ଯାତନା ଓ ବ୍ୟର୍ଥତା ଏଇ ପିଲାଙ୍କ ହସିଲା ଓଠ ପାଖରେ ଭାରି ତୁଚ୍ଛ ଲାଗେ । ବାତ୍ସଲ୍ୟ ମମତାକୁ ଯଦି ଲୋକେ ଭୁଲ୍ କହିଲେ, ତା' ହେଲେ ଠିକ୍‌ଟା କ'ଣ ? କୋଉ ସତ୍ୟ ଉପରେ ସେ ଆସ୍ଥା ସ୍ଥାପନ କରିବ ? ତାର ସବୁ ବିଚାର ବିଭ୍ରାଟ ହୋଇଯାଏ ।

ରଘୁଆ ମା' ନାତିକୁ ଚମ୍ପା କୋଳେଇବା ତା' ପାଇଁ କାଳ ହେଲା । ଧୀରେ ଧୀରେ ସେ ଖାଇବା ପିଇବା ଛାଡ଼ିଲା । ଶୁଖି ଶୁଖି କଣ୍ଟା ହେଇଗଲା । ଆଖି ନଖ ସବୁ ହଳଦିଆ ହୋଇଗଲା । ସୋରିଷ ତେଲ ଭଳି ପରିସ୍ରା କଲା । ଦିନ କେଇଟାରେ ପାଚିଲା କାକୁଡି ଭଳି ତା ଦେହ ହଳଦୀ ଗୁରୁଗୁରୁ ହୋଇଗଲା । ରଘୁଆ ରହେ ବିଦେଶରେ । ଶାଶୁ ବୋହୂ ଦିଟା ଯେତେ ଝଡ଼ାଫୁଙ୍କା ଗୁଣିଗାରିଡୀ ତୁଟୁକା ମୁଟୁକା ଔଷଧ ଦେଲେ କାହିଁରେ କିଛି ହେଲା ନାହିଁ । ମାସ ଦି'ଟାରେ ସେ ଆଖିବୁଜି ଦେଲା ।

ନାତିର ଶବ ଘରେ ପଡ଼ିଛି । କାଳିସୀ ଲାଗିଲା ପରି ରଘୁଆ ମାଆ ଛାତି ଫଟା କାନ୍ଦଣା କାନ୍ଦି ଗାଁ ଦାଣ୍ଡରେ ଚମ୍ପା ଉପରେ ତୁହାକୁ ତୁହା ଅଭିସମ୍ପାତ ବର୍ଷି ଦେଇଗଲା ।

"ଆଲୋ ସବାଖାଇ, ଡାହାଣୀ, ରକତ ଖାଇ, ବାହାରି ଆ, କୋଉଠି ଅଛୁ । ମୁଁ ତୋ ରକ୍ତ ପିଇଯିବି ଲୋ ଆଣ୍ଠୁକୁଡୀ । ତତେ କଞ୍ଚା ଖାଇଯିବି । ଯେମିତି ତୁ ମୋ ନାତିକୁ ଖାଇଛୁ । ଆ-ଆ-ବାହାରି ଆ ।"

ଦେଖଣାହାରୀ ସ୍ତବ୍ଧ ହୋଇ ଦେଖୁଥିଲେ । ରଘୁଆ ମା'ର ବିକଳ ବିଧ୍ବସ୍ତ ପ୍ରଚଣ୍ଡ ରୂପ । ଶାଶୁ ଚମ୍ପାକୁ କୋଠରୀ ଭିତରକୁ ଠେଲି ଦେଇ ବାହାରୁ କିଳିଣୀଟା ବନ୍ଦ କରି ଆଣିଲେ । ଦୁଃଖରେ ଅପମାନରେ ଲଜ୍ଜାରେ ତା ଛାତି ଫାଟି ଯାଉଥିଲା । ସେ ନେହୁରା ହୋଇ ଶାଶୁଙ୍କୁ କହୁଥିଲା ।

"ମୁଁ ସତ କହୁଛି ମାଆ । ମୁଁ ସପନରେ ସୁଦ୍ଧା କୋଉ ଛୁଆର କେବେ ଅମଙ୍ଗଳ ଚାହିଁନି । ମହାଦେବଙ୍କ ମୁଣ୍ଡରେ ହାତ ରଖି ମୁଁ ହଲପ କରି କହିବି- ମତେ ବିଶ୍ୱାସ କର ।"

ଶାଶୁ ବିରକ୍ତ ହୋଇ କହିଲେ- "କିଏ ଜାଣି ଶୁଣି ଏକଥା କରେ ନାଇଁ ଲୋ, ତୁ ଡାହାଣୀ କଳାରେ ଜନମ ପାଇଚୁ । ସେଇ କଳା ତତେ ଏମିତି କରାଉଚି ।" ସେ ସତକୁ ସତ ଏଥର ଦବିଗଲା ।

ରଘୁଆ ମାଆର ପାଟି ଥମିଗଲାଣି । ଦେଖଣାହାରୀ ବି ଯିଏ ଯୁଆଡେ ଗଲେଣି । ସେ ଉଠିଲା । ପାରଦ ଛାଡି ଛାଡି ଆସୁଥିବା ଦର୍ପଣଟା ଆଣି ହାତରେ ଧରିଲା । ଅଲରା

ବାଳ ଗୁଡାକ ଟିକେ ସାଉଁଳେଇ ଆଣିଲା । ମନେ ପଡ଼ିଲା ତା ଆଈ କହୁଥିଲା ଡାହାଣୀମାନଙ୍କର ଜିଭ ବହୁତ ଲମ୍ବା । ଅତି ସହଜରେ ସେମାନେ ଜିଭଟାକୁ ନାକ ଅଗରେ ଲଗେଇ ଦିଅନ୍ତି । ବେଳେବେଳେ ତ ସେମାନେ ଜିଭଟାକୁ କାଢ଼ି ଅଣ୍ଟାରେ ବି ଗୁଡାଇ ଦିଅନ୍ତି । ସେ ପାରୁ ପର୍ଯ୍ୟନ୍ତ ନାକ ଅଗରେ ଜିଭ ଲଗାଇବାକୁ ଚେଷ୍ଟା କଲା, ହେଲାନାହିଁ । ତା ହେଲେ ସେ ଡାହାଣୀ ହେଲା କେମିତି ? ମିଛ କଥା ସବୁ ଡାହା ମିଛ । ସେ ଡାହାଣୀ ନୁହେଁ । ହେଇ ନପାରେ । ଦର୍ପଣ ଆଗରେ ଜିଭ ବାହାର କରି ସେ ଆଗକୁ ଲମ୍ବେଇ ଧରିଲା । ଏଁ କଳା ଦାଗ ! ସେ ଚମକି ପଡ଼ିଲା । ତିନିଚାରି ଜାଗା ମନ୍ଦାମନ୍ଦା କଳାଜାଇ ତା' ଜିଭରେ । ପିଲା ଦିନେ ସେ ଶୁଣିଥିଲା- ଇୟେ ବି ଡାହାଣୀ ମାନଙ୍କର ଆଉ ଏକ ଲକ୍ଷଣ ।

ଲୋକଙ୍କର ବିଶ୍ୱାସ ସତ । ସେ ଡାହାଣୀ । ପିଲାଖାଇ ଡାହାଣୀ । କଞ୍ଚା ଡାହାଣୀ । ଆତଙ୍କରେ ସେ ଶିହରୀ ଉଠିଲା । ଜିଭଟାକୁ ଆହୁରି ଭଲକରି ଲମ୍ବେଇ ଧରିଲା ଦର୍ପଣ ସମ୍ମୁଖରେ । ଗୋଟିଏ ହାତରେ ଦର୍ପଣ, ଆର ହାତରେ ଲୁଗା କାନିଟା ଆଣି ସେ ରଗଡ଼ି ପୋଛି ଚାଲିଲା ଜିଭକୁ । ପୋଛି ପୋଛି ନୟାନ୍ତ ହେଲା, କଳା ଦାଗରୁ ବିନ୍ଦୁଟିଏ ବି ଉଣା ପଡ଼ିଲା ନାହିଁ । ସେ ଆହୁରି ଜୋରରେ ରଗଡ଼ି ଲାଗିଲା । କେମିତି ଗୋଟିଏ ବିକଟାଳିଆ ସ୍ୱର ବାହାରି ଆସୁଥିଲା ତା କଣ୍ଠରୁ । ସେ ଅଜ୍ଞାନ ହୋଇକେବଳ ସେଇ କଳାଦାଗକୁ ଘଷିବାରେ ଲାଗିଥିଲା । ରଗଡ଼ା ଖାଇ ଖାଇ ଲାଲ ଟହଟହ ହେଇଗଲାଣି ଜିଭଟା । କଣ୍ଠନଳୀରେ ଅଜସ୍ର ଯନ୍ତ୍ରଣା । ସତେ ଅବା ଜିଭଟା ଛିଡ଼ି ଅଲଗା ହେଇଯିବ ସେଇଠୁ । ଆଖିରୁ ଯନ୍ତ୍ରଣାରେ ଝରିଯାଉଥିଲା ଧାର ଧାର ଲୁହ । ସେଥିକି ବି ଖାତିର ନଥିଲା ତାର, ସେ କେବଳ ଗଁ-ଗଁ ହେଇଥିଲା ଆଉ ଜୋର୍ ସୋର୍‌ରେ ଜିଭଟାକୁ ରଗଡ଼ି ଚାଲିଥିଲା । ତା ଗର୍ଜନ ଶୁଣି ଶାଶୁ କିଳିଣୀଟା ଖୋଲି ଦେଇ ପାଟିକରି ଉଠିଲେ ।

"ଆଲୋ-ଆଲୋ-ଇୟେ କ'ଣ କରୁଚୁ, କ'ଣ କରୁଚୁଲୋ ଚୁଣ୍ଡାଲୁଣୀ । ମରିଯିବୁ ଲୋ ମରିଯିବୁ । ତା ହାତରୁ ଛଡ଼େଇ ନେଲେ ଦର୍ପଣଟା । ଚମ୍ପା ଏଇ ସୁଯୋଗ ଖୋଜୁଥିଲା-ସେ ଏକା ଝଟକାରେ ଶାଶୁଙ୍କୁ ଠେଲି ଦେଇ ଏରୁଣ୍ଡି ବାହାରକୁ ବାହାରି ଆସିଲା । ତାର କ୍ଷତାକ୍ତ ଜିଭଟା ଅତିଶୟ ଯନ୍ତ୍ରଣାରେ ଫାଟି ପଡୁଥିଲା । ଧାର ଧାର ବହି ପଡୁଥିଲା ରକ୍ତ । ସେଥିପ୍ରତି ଟିକେ ବି ଧ୍ୟାନ ନ ଦେଇ ସେ ଗୋଡ଼ହାତ କଚାଡ଼ି କଣ୍ଠଫଟେଇ ଗର୍ଜନ କରି କହୁଥିଲା-

ହଁ ହଁ ମୁଁ ଖାଇବି, ଖାଇବି, ସମସ୍ତଙ୍କୁ ଖାଇବି । ଏ ଗାଁ ସାରା ଲୋକଙ୍କୁ ଖାଇବି । ମୁଁ କଞ୍ଚା ଡାହାଣୀ, କାହାକୁ ରଖେଇ ଦେବିନି । ଜିଭର ଯନ୍ତ୍ରଣା ହେତୁ ସେ ସ୍ପଷ୍ଟ ଉଚ୍ଚାରଣ କରିପାରୁ ନଥିଲା । ଧୂଳି ଧୂସରିଆ ରାସ୍ତା ଉପରେ ବସି ପଡ଼ି ସେ ତଳୁ ମୁଠାମୁଠା ଧୂଳି ଉଠାଇ ଶୂନ୍ୟକୁ ଫିଙ୍ଗୁଥିଲା । ଆଉ ବିକୃତ ସ୍ୱରରେ କହୁଥିଲା-

ମୁଁ କ-ଞ୍ଚା-ଡା-ହାଁ-ଇଁ, କ-ଞ୍ଚା-ଡା-ହାଁ-ଇଁ, ଖାଇବି-ଖାଇବି, ହ-ବୁ-କୁ-ଖାଇବି, ହବୁକୁ ଖାଇବି-ମୁଁ କ-ଞ୍ଚା-ଡା-ହାଁ-ଇ, ମୁଁ-କ-ଞ୍ଚା-ଡା-ହାଁ ଇଁ, କ-ଞ୍ଚା ଡାଁ ହାଁ ଇଁ ।



# ଉଜୁଡା ସଂସାର

ବୈଶାଖୁ ଭତ୍ରାର ଶବ ପଡ଼ିଚି ଗତକାଲି ରାତିରୁ । ଜାତିଭାଇ ଅଡ଼ି ବସିଛନ୍ତି ଶବ ଉଠେଇବେ ନାହିଁ । ସେ ପାପୀ, ମହାପାପୀ । ବଞ୍ଚିଥିବା ବେଳେ ଗାଁ ଲୋକେ ତାକୁ ଏକଘରିକିଆ କରିଥିଲେ । ନିଆଁପାଣି ବାରଣ କରିଥିଲେ । ତାକୁ କି ତା ସ୍ତ୍ରୀ ସୋନାଦିକୁ କେହି ଛୁଉଁ ନଥିଲେ କି ଭଲରେ କଥା ପଦେ ହେଉନଥିଲେ । ସିଏ ତ ଘା ଘଉଡରେ ସଡୁଥିଲା, ତା ସାଙ୍ଗରେ ଭଲ ମଣିଷଟା ସୋନାଦି ବି ଜିଅନ୍ତା ମରଣର ଦଶା ଭୋଗୁଥିଲା ।

ସୋନାଦି ସିନା ମୁଣ୍ଡ ପିଟି ପିଟି କାନ୍ଦୁଥିଲା, କିନ୍ତୁ କୋହ ଟିକିଏ ଥମିଗଲେ ଭାବୁଥିଲା ବୈଶାଖୁଟା ମରିଯାଇନି ଯେ ତରିଯାଇଛି । ତା ଗୋଡ଼ର ଘା' ଘଉଡ, ତାର ପୂଜପାଣି, ତାର ଡହଳବିକଳ, ସେ ଆଦୌ ଦେଖିପାରୁନଥିଲା, ଫାଟିଯାଉଥିଲା ତା' ଛାତି ।

ସବୁ ଯନ୍ତଣାରୁ ମୁକ୍ତି ପାଇ ପୂର୍ଣ୍ଣ ପ୍ରଶାନ୍ତିରେ ନିଦ୍ରା ଯାଇଛି ବୈଶାଖୁ ।

ଅଶାନ୍ତ ହୋଇଯାଇଚି ସୋନାଦି, ଅଶାନ୍ତ ହେଇ ଯାଇଛନ୍ତି ଜାତିଭାଇ, ସାଇ ପଡିଶା, ବନ୍ଧୁ କୁଟୁମ୍ବ । ସିଏ ବଞ୍ଚିଥିଲାବେଳୁ ଯେତେବେଳେ ଘଟଣାଟା ପ୍ରଘଟ ହୋଇ ସାରିଥିଲା, ସୋନାଦି ଦିଶାରୀ କଥା ଅନୁସାରେ ଭାତ ନାୟକଙ୍କୁ ଡାକି ଜାତି ହେବାର ଥିଲା । ସିଏ ସେୟା କଲା ନାଇଁ, ସମସ୍ତେ ଦୋଷ ଦେଉଥିଲେ ତାକୁ । ଏବେ ସେମାନେ ଅଡ଼ି ବସିଛନ୍ତି, ବୈଶାଖୁ ମହାପାପୀ । ତାର ଜାତି ବୁଡ଼ିଛି । ତା ଶବ ଉଠେଇଲେ ମହାପାତକ ଲାଗିବ । ଯିଏ ବଞ୍ଚିଥିଲା ବେଳେ ଅଛୁଆଁ ଥିଲା । ପଚା ମାଉଁସ ଖଣ୍ଡ ଖଣ୍ଡ ହେଇ ଗଳି ପଡୁଥିଲା ଯାହା ଦେହରୁ । ତା ଶବ କେମିତି ଛୁଇଁବେ ଗାଁ ବାଲା ?

ସୋନାଦି ପୂରାପୂରି ଏକୁଟିଆ ହୋଇଯାଇଥିଲା । ସିଏ ବୈଶାଖୁର ଶବ ପାଖରେ ଅସରାଏ ଲେଖାଁ ବାହୁନୁଥିଲା ତ ପୁଣି ଗାଁ ଲୋକଙ୍କ ପାଖରେ ନେହୁରା ନିଉଛାଳି ହେଉଥିଲା । ମୁଣ୍ଡେ ବେଳ ହେଲାଣି, ରାତି ପାହିଲା ପରଠୁଁ ଏ ପର୍ଯ୍ୟନ୍ତ ସେ ଏମିତି ଗାଁ ଦାଣ୍ଡରେ ବାଡ଼େଇ କଚାଡ଼ି ହେଉଥିଲା । ତା ବିକଳ ପଣରେ ପାହାଡ଼ ପର୍ବ, ଗଛଲତା, ନଦୀ, ଆକାଶ, ପବନ ମାଟି ଗୋଡ଼ି ସମସ୍ତେ ଯେମିତି ବିଗଳିତ ହୋଇ ପଡୁଥିଲେ । ଧୀରେ ଧୀରେ ଗାଁ ସାରା ଲୋକ ପିଲାଠୁଁ ବୁଢ଼ା ପର୍ଯ୍ୟନ୍ତ ଜମିଗଲେଣି ଗାଁ ଦାଣ୍ଡରେ । ସେଇ ଭିଡ଼ ଭିତରୁ ମୁରବୀ ଶ୍ରେଣୀର ଲୋକଟାଏ ବାହାରି ଆସିଲା । ସୋନାଦିଠାରୁ ଟିକିଏ ଦୂର୍‌ଛଡ଼ା ହୋଇ କହିଲା-

ହଉ ଉଠ୍ ଉଠ୍ । ଯାହା ତ ହେବାର ହେଲାଣି । ଏବେ ବୈଶାଖରୁ ଶବ ଯେଉଁମାନେ ଉଠେଇବେ ସେମାନଙ୍କୁ ବି ମହାପାତକ ଦୋଷ ଲାଗିବ । ସେମାନଙ୍କର ବି ଜାତି ଯିବ । ସେମାନଙ୍କୁ ଜାତି ହେବାପାଇଁ ଯାହା ଲାଗିବ, ସବୁ ତୁ ଦେବୁ । ମଦ, କୁକୁଡା, କୁକୁଡା ଅଣ୍ଡା, ନଡ଼ିଆ, ଭୋଜିଭାତ, ନଗଦ ଟଙ୍କା!! ତୁ ଏଥିରେ ରାଜି ତ ତୋ ଦୁଆରୁ ଶବ ଉଠିବ ।

ନିରୁପାୟ ସୋନାଦିର ଚାରା ନଥିଲା । ବୈଶାଖରୁ ଶବ ଉଠିବା ଥିଲା ତାର ବର୍ତ୍ତମାନର ବଡ଼ ସମସ୍ୟା । ସେତକ କାମ ସରିଗଲେ ସେ ଯୁଆଡେ ଇଛା ସିଆଡ଼େ ଚାଲିଯିବ ।

ତା ପାଖରେ ଏଇ ଝାଟିମାଟି ଘର ଖଣ୍ଡକ ଛଡ଼ା ଆଉ କିଛି ସମ୍ବଳ ନଥିଲା । ସେ ଖଣ୍ଡକ ବିକି କି ବନ୍ଧା ଦେଇ ବୈଶାଖକୁ ଜାତି କରିଥିଲେ ଆଜି ଏଦିନ ଦେଖିବାକୁ ପଡ଼ିନଥାନ୍ତା । କିନ୍ତୁ ତାପରେ ଘା' ଘଉଡ଼ ଲୋକଟାକୁ ନେଇ ସେ କେତେ ବାରଦ୍ୱାର ଶୁଣ୍ଢୀପିଣ୍ଡା ହୋଇଥାନ୍ତା । ତାର ଘା' ଘଉଡ଼ ଆସନା ଦେହଟାକୁ ଦେଖି ଲୋକ ଛି' ଛାକର କରିଥାନ୍ତେ । ଦୂର୍‌ଦୂର୍ ମାର୍ ମାର୍ କରିଥାନ୍ତେ । ବଣ ଜଙ୍ଗଲରେ ପଡ଼ି ସିଏ ବାଘ କି ଭାଲୁ ମୁହଁରେ ଯାଇଥାନ୍ତା । ନହେଲେ ଦିନ ଦି'ପହରେ ବଞ୍ଚିଥିବା ଲୋକଟାକୁ ବିଲୁଆ କୁକୁର ଝୁଣି ଖାଇଥାନ୍ତେ ।

ସୋନାଦି ସେଇ ଝୁପୁଡ଼ି ଘରେ ମାଟି କାମୁଡ଼ି ପଡ଼ି ରହିଲା । ବେମାରିଆ ଲୋକଟାକୁ ଖରାବର୍ଷା ଦାଉରୁ ଆଡୁଆଳରେ ରଖିଲା । ବେଳ ଅବେଳରେ ଯେତେବେଳେ ଯାହା ମିଳିଲା ଗଣ୍ଡାଏ ଫୁଟେଇ ଦେଲା ତ କିଛି ନ ମିଳିଲେ ବଣରୁ କନ୍ଦା କି ବଣ ଫଳ ମୂଳ ଆଣି ତା ମୁହଁରେ ଦେଲା । ବୈଶାଖୁ ଚାଲିଗଲା ପରେ ଏସବୁର ଆଉ ଆବଶ୍ୟକ ନଥିଲା । ବୈଶାଖୁ ନିଜେ ମୁକ୍ତି ପାଇବା ସଂଗେ ସଂଗେ ସୋନାଦିକୁ ବି ମୁକ୍ତ କରିଦେଇଥିଲା ।

ସେମିତି ମଡ଼ାକାନ୍ଦଣା କାନ୍ଦୁ କାନ୍ଦୁ ସେ କହିଲା– ହଁ ମଦ କୁକୁଡ଼ା, ଅଣ୍ଡା ସବୁ ଦେବି । ଜାତି କୁଟୁମ୍ବ ପାଇଁ ଟଙ୍କା ଦେବି । ଭାତ ନାୟକକୁ ଡାକି ଭୋଜିଭାତ ଦେବି । ତମକୁ ଜୁହାର ଲାଗୁଛି ମାହାପୁରୁମାନେ । ମୋ ଘରୁ ମଡ଼ା ଉଠେଇ ନିଅ ।

ସେତେବେଳକୁ ଗାଁ ସାରା ଲୋକ ଭୋକରେ ଆଉଟୁ ପାଉଟୁ ହେଲେଣି । ମଡ଼ା ଉଠିନି । କାହାରି ଘରେ ଚୁଲି ଜଳିନି । ଛୁଆ ଗୁଡ଼ାକ ଭୋକରେ ଡହଳ ବିକଳ ହେଲେଣି । ଗାଁ ଲୋକଙ୍କର ଆଉ ହଟ ସାଧିବାର ନଥିଲା । ଯିଏ ଯାହାଘରୁ ଦୁଇ ଦୁଇ ଖଣ୍ଡ କାଠ ଆଣି ଜମେଇ ଦେଲେ ସୋନାଦିର ଘର ଆଗରେ । ପର୍ବତ ପ୍ରମାଣେ କାଠ ଗଦା ହୋଇଗଲା ଘଣ୍ଟାକ ଭିତରେ । ପୁରୁଷ ଲୋକ କେତେଟା ପାଳ ଦଉଡ଼ି ବଳୁଥିଲେ ତ ଆଉ କେତେ ଜଣ ମିଶି କୋକେଇ ସଜାଡୁଥିଲେ । କିଏ ନିଆଁ ବରିଆ ସଜାଡୁଥିଲା ତ ଆଉ କେହି ଖଇ କଉଡ଼ି ଯୋଗାଡ଼ କରୁଥିଲା ।

ସୋନାଦି ଆଖିରେ ଆଉ ଲୁହ ନଥିଲା । ସିଏ କାନ୍ଥକୁ ଆଉଜି ବସି ଦେଖୁଥିଲା । ମଡ଼ା ସାଙ୍ଗିଆମାନଙ୍କର ତତ୍ପରତା ଆଉ ରୋମନ୍ଥନ କରୁଥିଲା ସେଇ ଦୁର୍ଦ୍ଦଶାର ଦିନକୁ, ଯେଉଁ ଦିନଠୁ ତା ପାଇଁ ବଞ୍ଚିବାର ଅର୍ଥ ଥିଲା କେବଳ ଗୁଡ଼ାଏ ଯନ୍ତ୍ରଣା । ଜୀବନ ପାଲଟି ଯାଇଥିଲା କୁମ୍ଭୀପାକ ନର୍କ ।

ସୋନାଦି ଆଖିରେ ନାଚି ଉଠିଲା ସେଦିନର ସେଇ ଘଟଣା ।

ରୁଟି ଦୁଇଖଣ୍ଡ କାନି ଅଗରେ ବାନ୍ଧି ଅଣ୍ଟା ତଳକୁ ଗୁଞ୍ଜି ଦେଲାବେଳକୁ ମାଲିକାଣୀ ଅଧବେଲା ନାଲି ଚା ଧରି ପହଞ୍ଚିଗଲା ଆଉ ତାକୁ ତାଗିଦ୍ କରିବା କଣ୍ଠରେ କହିଲା-

"ଆଲୋ ସୋନାଦି, ଗାଣ୍ଡିଏ ଲୁଗା ପଡ଼ିଚି କାଚିବାକୁ । ତୋ ପେଟରେ ସିନା କ'ଣ ଟିକେ ପଡ଼ିଲେ କାମ କରିବୁ । ରୁଟି ଦିଖଣ୍ଡ ଦେଲି ଯେ ତୁ ତାକୁ ଅଣ୍ଟା ତଳେ କ'ଣ ଗୁଞ୍ଜୁଛୁ ?"

ସୋନାଦି ଟିକିଏ ଶଙ୍କିଯାଇ କହିଲା, ସେଇ ଚା ବେଲାଟା ଦିଅ ମା । ସେଇଟା ମୋର ଚଳିଯିବ । ମରପଡ଼ ହେଇ ଲୋକଟା ଘରେ ପଡ଼ିଛି । ଏ ଦିଖଣ୍ଡ ତା ମୁହଁରେ ଦେଲେ ସିଏ ଟିକେ ଉଠି ବସିବ ।

ମାଲିକାଣୀ କହିଲା, ତୋ ଲୋକ ଆଉ କୁଲି ଯାଉନି କି ?

ସୋନାଦି ମୁହଁ ଶୁଖେଇ କହିଲା, କେମିତି ଯିବ ମା ! କୋଦାଳ ଚୋଟ ବାଜି ତା ଗୋଇଠି ଉପରକୁ ଘା'ଟା ହୋଇଥିଲା ଯେ ବରଷେ ହେଲାଣି ଶୁଖିବାକୁ ନାଇଁ । ହରଦମେ ପୁଜପାଣି ଦଉଚି ।

ମାଲିକାଣୀ ପଚାରିଲା, ଡାକ୍ତର ବଇଦ ଦେଖେଇଲୁ ନା ନାଇଁ ? କି ଡାକତର ଦେଖେଇବି ମା ! ଦିଶାରୀ କହିଲା ଘରର ଡୁମା ଧରିଚି । ଡାକତର ଓଷଦ ଦେଲେ ସେ ଆହୁରି ରାଗ ପଡ଼ିବ । ସେ କଳା କୁକୁଡ଼ା ପୂଜିଲା । ଡୁମା ଶାନ୍ତ ହେଲେ ଘା ଦୁଇ ଦିନରେ ଶୁଖିଯିବ ବୋଲି କହିଛି ।

ମାଲିକାଣୀ ସୋନାଦି ଚା ବେଲାରେ ମୁଢ଼ି ଦୁଇ ପୋଷ ପକେଇ ଦେଉ ଦେଉ କହିଲା, ହଉ ହଉ ତୁ ଯା ! ଡେରି ହେଲାଣି । ଲୁଗା ସେତକ କାଚି ଦେବୁ ।

ସୋନାଦି ଗୋଛାକ ଯାକ ଲୁଗା କାଚି ଘରକୁ ଫେରିଲା ବେଳକୁ ମୁଣ୍ଡେ ବେଳ । ଦାଣ୍ଡ ଦୁଆର ମୁହଁ କାନ୍ଥକୁ ଆଉଜି ବସିଥିଲା ବୈଶାଖୁ । ଘାଉଡ ଗୋଡ଼ଟାକୁ ଟିକେ ଆଗକୁ ବଢ଼େଇ ଦେଇଥିଲା । ଆଇଁଷିଣିଆ ଗନ୍ଧ ପାଇ କେତେଟା ମାଛି ସେଇ ଘା' ଚାରିପଟେ ଚକ୍କର କାଟୁଥିଲେ । ବୈଶାଖୁ ସେମାନଙ୍କ କବଳରୁ ଘା'କୁ ସୁରକ୍ଷା ଦେବାପାଇଁ ଶତଚେଷ୍ଟା କରୁଥିଲେ ସୁଦ୍ଧା ତଥାପି କେତେଟା ଅବାଧ୍ୟ ମାଛି କ୍ଷତ ଉପରେ ବସି ଶୁଣ୍ଢ ଗଳେଇ ଦେଉଥିଲେ ଓ ଯନ୍ତ୍ରଣାରେ ଅତିଷ୍ଠ ହେଇ ଉଠୁଥିଲା ବୈଶାଖୁ ।

ବୈଶାଖୁର ପାଦ ଆଡ଼କୁ ଚାହିଁଲା ସୋନାଦି । ଆଇଁଷିଣିଆ ଗନ୍ଧରେ ପେଟରୁ ଭାତ ବାହାରି ପଡ଼ିଲା ଭଳି ତାକୁ ଲାଗିଲା । ଗୋଡ଼ର ଅରାଏ ଜାଗା ମାଡ଼ି ବସିଲାଣି । ଈଷତ୍ ଗୋଲାପୀ ରଙ୍ଗର ମେଞ୍ଚାଏ ମାଉଁସ ବାହାରକୁ ବାହାରି ପଡ଼ିଛି । କାନି ଗଣ୍ଠିରୁ ରୁଟି ଦିଖଣ୍ଡ ଖୋଲି ବୈଶାଖୁ ହାତକୁ ବଢ଼େଇ ଦେଉ ଦେଉ କହିଲା-

ଘା'ଟା ଶୁଖିବ କ'ଣ ? ଦିନକୁ ଦିନ ଅଧିକ ପୁଜପାଣି ଦଉଚି ।

ସୋନାଦି କଥାକୁ ଶୁଣି ନ ଶୁଣିଲା ଭଳି ଶୁଖିଲା ରୁଟିରୁ ଖଣ୍ଡେ ପାଟିରେ ପୂରାଇ ବୈଶାଖୁ ଗାଉଁ ଗାଉଁ ହେଇ କହିଲା,

ପାଟିଟା ଚାପରା ହେଇଗଲାଣି । ଆଇଁଷ ପାଣି ଟିକେ କଲୁନି ? ଶୁଖୁଆ ଟିକେ କି ମାଛ ଟିକେ ।

ସୋନାଦି ଚିହିଁକି ଉଠି କହିଲା, ଦୁଇ ମାସ ହେଲା ଘରେ ପଡ଼ିଛୁ ଯେ ଭାତ ସାଙ୍ଗେ ପିଆଜ ଟିକେ ବି ମିଳୁନି । ତତେ ମାଛ ମାଉଁସ କୋଉଠି ଆଣିଦେବି ?

ବୈଶାଖୁ ଟିକେ ନରମି ଗଲା । ସତ୍ ସତ୍ । ଗୋଟିଏ ଦିନ କାମ କଲେ ପଚାଶ ଟଙ୍କା ମିଳୁଥିଲା, ଭାଡିଆ ଉଠୁଥିଲା । ମଦପାଣି ଖର୍ଚ୍ଚ ବି ଉଠୁଥିଲା । ସଂଜକୁ ଫେରିଲା ବେଳକୁ କେବେ କେବେ ଚୂନା ମାଛ ଟିକେ, ଶୁଖୁଆ ଟିକେ କେବେ ବା ମାଉଁସ ଦୋକାନରୁ ମାଉଁସ ଟିକେ ହେଉ ବା ଅନ୍ତ ପୁଟି ଟିକେ ହେଉ ଧରି ଆସୁଥିଲା । ଦୁହିଁଙ୍କର ବେଶ୍ ଚଳି ଯାଉଥିଲା । ଏବେ ତାକୁ ଆଉ କେହି କୁଲି ନେଉ ନାହାଁନ୍ତି । କୋଢ଼ିଆଟା, କୋଷ୍ଠିଆଟା କହି ଦୂର୍ ଦୂର୍ କରୁଛନ୍ତି । ଭଲ କରି କଥା ପଦେ ବି ହେଉ ନାହାନ୍ତି । ପରଘରେ ପାଇଟି କରି ସୋନାଦି ଯାହା ଆଣୁଛି ସେଥିରେ ଓଳିଏ ଖାଇଲେ ଓଳିଏ ଉପାସ ।

ସୋନାଦି ଚାଳରୁ ମେଞ୍ଚାଏ ଅଡୁଆ ବାଳ ଆଣି ସେଥିରେ ଚଉଁରୀଟାଏ ବଳି ବସିଲା । ବୈଶାଖୁ ହାତକୁ ସେଇଟା ବଢ଼େଇ ଦେଇ କହିଲା ନେ ଏଇଟା ପାଦ ଚାରିପଟେ ଗୁଡ଼େଇ ପକା । ଦୃଷ୍ଟି କଟିଯିବ ।

ବୈଶାଖୁ ଦୁଇ ପାପୁଲି କାନ୍ଧରେ ପଡ଼ିଥିବା ଗାମୁଛାରେ ପୋଛି ଚଉଁରୀଟାକୁ ପାଦ ଚାରିପଟେ ବାନ୍ଧୁ ବାନ୍ଧୁ ଚମକି ପଡ଼ି କହିଲା-

ସୋନାଦି ! ଦେଖ୍ ଦେଖ୍ ତ । ଏଇଠି କ'ଣଟା ଏମିତି ସାଲୁବାଲୁ ହେଉଚି । ସୋନାଦି ଝୁଙ୍କିପଡ଼ି ବୈଶାଖୁର ଗୋଡ଼ ଟାଣି ଆଣିଲା ଆଲୁଆ ପଡୁଥିବା ଜାଗାକୁ । ବତୁରା ମୁଢ଼ିଭଳି ଲୁତୁପୁତିଆ ଦୁଇଟା ପୋକ । ସେ ଚାହିଁଲା ବୈଶାଖୁ ମୁହଁକୁ ।

ସେ ମୁହଁରେ ଆଉ ରକ୍ତ ନଥିଲା । ଦୁଇ ମାସ ହେଲା ଘା' କୋପରେ କ୍ୱରନୁଆଁର ଭୋଗୁଥିବା ଦରମଲା ମଣିଷଟା ଯେମିତି ଏଇ ମୁହୂର୍ତ୍ତରେ ମରଣ ପାଖରେ ନିଜକୁ ସମ୍ପୂର୍ଣ୍ଣ ସମର୍ପି ଦେଲା । ଭୟରେ ସେ କଳା କାଠ ପଡ଼ିଗଲା ତଣ୍ଟି ଶୁଖି ଅଠା ହୋଇଗଲା । ଝାଇଁ ଝାଇଁ କରିଦେଲା ମୁଣ୍ଡ ।

ସୋନାଦି ଉଠିପଡ଼ି ଝାଟୁରୁ ଖଣ୍ଡେ କାଠି ଭାଙ୍ଗି ଆଣିଲା । ଗୋଜିଣା ଧରି ରଡ଼ ନିଆଁରୁ ପୋଡ଼ା ବାଇଗଣ ବାହାର କଲାଭଳି ସେଇକାଠି ଖଣ୍ଡକରେ ଧିରେ ଧିରେ ଉଖୁରେଇ ପକେଇଲା । ଗଳ ଗଳ ହେଇ ତଳେ ଗଳି ପଡ଼ିଲେ ଦୁଇଟା ଲାଙ୍ଗୁଡ଼ିଆ ପୋକ । ତଳେ ପଡ଼ିବାକ୍ଷଣି ସେ ପୋକ ଦୁଇଟାଙ୍କ ଗତି ଆହୁରି ତୀବ୍ର ହୋଇଗଲା । ଦୁଇ ବିପରୀତ ଦିଗକୁ ମୁହଁକରି ଘୁଷୁରି ଘୁଷୁରି ବଢ଼ିଚାଲିଲେ ଆଗକୁ । ସତେ ଅବା ବୈଶାଖୁର ସବୁ ପାପ ଜୀବନ୍ତ ହୋଇ ଘୂରି ବୁଲୁଛନ୍ତି ଘର ସାରା । ସେ ଦୁଇଟା ଆଉ ସେମାନଙ୍କ ଦୃଷ୍ଟିରେ ପୋକ ହୋଇ ନଥିଲେ । ଭୟଙ୍କର ବିଭତ୍ସ ଦିଶୁଥିଲେ ବେଳକୁ ବେଳ । ପ୍ରାଣ ବିକଳରେ ଦୁଇ ପ୍ରାଣୀ ଘରର ଗୋଟାଏ କୋଣକୁ ଆଉଜି ଚିତ୍କାର କରୁଥିଲେ । ଆମକୁ ରକ୍ଷାକର । ଆମକୁ ରକ୍ଷା କର ! ଆମର କିଛି ଦୋଷ ନାହିଁ ।

ସୋନାଦିଠୁଁ ଖବର ପାଇ ଦିଶାରୀ ବେଳ ବୁଡ଼କୁ ଆସି ପିଣ୍ଡାରେ ବସିଲା । ସେ ଗମ୍ଭୀର ହୋଇ ବୈଶାଖୁର ପାଦ ଆଡ଼କୁ ଚାହିଁଲା । ଘୃଣାରେ ନାକ ଟେକି ହେଇଗଲା । ଗବ ପତରଟାରେ ଗୁଡ଼େଇ ମଲା ପୋକ ଦୁଇଟାକୁ ଚାଳରେ ଖୋସି ଦେଇଥିଲା ସୋନାଦି । ଦିଶାରୀ ଆଗରେ ଆଣି ଥୋଇଦେଲା । ସେ ଆଖି ବଡ଼ ବଡ଼ କରି ସେଇ ପୋକ ଦୁଇଟାଙ୍କୁ ଭଲ ଭାବରେ ନିରୀକ୍ଷଣ କଲା ଓ ଶେଷରେ ଖୁନୀ ଆସାମୀକୁ ଫାଶୀ ଦଣ୍ଡ ଶୁଣାଇବା ପରି କହିଲା, ଘୋର ଅପରାଧ । ମହାପାପର ଫଳ । ବୈଶାଖୁ ପାପୀ । ମହାପାପୀ । ଡୁମା ଦେବତାଙ୍କୁ ଶାନ୍ତି କର । ଜାତି ଭାଇଙ୍କୁ ଭୋଜି ଭାତ ମଦପାଣି ଦେ । ପ୍ରାୟଶ୍ଚିତ କର । ତୁ ଆଜିଠୁଁ ଅଜାତିଆ ହେଲୁ । ପ୍ରାୟଶ୍ଚିତ ନ କଲା ପର୍ଯ୍ୟନ୍ତ ଏକ ଘରକିଆ ହେଇ ରହିବୁ । ବୈଶାଖୁ ସ୍ଥାଣୁ ପାଲଟି ଯାଇଥିଲା । ସୋନାଦି ବ୍ୟସ୍ତ ହୋଇ କହିଲା - ଆମେ କ'ଣ କରିବୁ ଦିଶାରୀ ?

ଦିଶାରୀ ଘାଘଡ଼ା କଣ୍ଠରେ ଆଦେଶ ଦେବା ପରି କହିଲା, ମୁଣ୍ଡେ ଛେଳି, ଦୁଇଟା କୁକୁଡ଼ା, ପାଞ୍ଚମାଣ ଚାଉଳ, ନଡ଼ିଆ ଦୁଇଟା, ଅଣ୍ଡା ପାଞ୍ଚଟା ପୂଜା ପାଇଁ ଲୋଡ଼ା । ଭାତ ନାୟକ ଆସି ତତେ ଜାତି କରେଇବ । ଗାଁ ଲୋକଙ୍କୁ ଭୋଜିଭାତ ଦେବୁ ।

ଦୁଇ ପ୍ରାଣୀଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା । ଦୁଇ ବେଳ ଦୁଇ ମୁଠା ଖାଇବାକୁ ପାଉ ନଥିବା ମଣିଷ ଦୁଇଟାଙ୍କ ପାଇଁ ଏହା ଥିଲା ସତକୁ ସତ ମୃତ୍ୟୁଦଣ୍ଡାଦେଶ ।

ବୈଶାଖୁ ତ ପଥର ପାଲଟି ଯାଇଥିଲା । ସୋନାଦି ବିକଳ ହେଇ କହିଲା, ଏତେ ସବୁ ଆମେ କାହୁଁ ଆଣିବୁ ଦିଶାରୀ । ଆମକୁ ଟିକେ ଦୟା କର ।

ଦିଶାରୀ ମୁହଁ ଛିଞ୍ଚାଡ଼ି କହିଲା, ଏସବୁ ତୁ ମତେ ଦେଉଛୁ କି ? ବୈଶାଖୁର ପାପ ଛାଡ଼ିବା ପାଇଁ ଡୁମା ଦେବତାଙ୍କ ପାଖରେ ପୂଜା ହେବ । ଗାଁ ଲୋକଙ୍କୁ ଭୋଜି ଭାତ ନ ଦେଲେ ତୁ ଜାତିରେ କେମିତି ମିଶିବୁ ?

ସୋନାଦି କହିଲା, ସତକଥା !

ଲମ୍ବା ଲମ୍ବା ପାଦ ପକେଇ ଆଗକୁ ବଢ଼ିଲା ଦିଶାରୀ ।

ବୈଶାଖୁ ବିକଳ ହେଇ ସୋନାଦିକୁ ଚାହିଁଲା ।

ସୋନାଦି ଚାହିଁଲା ବୈଶାଖକୁ । ପାଞ୍ଚ ହାତର ମର୍ଦ୍ଦଟା । ବରଷ ଗୋଟାକ ଭିତରେ ଯେମିତି ମୁର୍ଦ୍ଦାର ପାଲଟି ଯାଇଛି । କଳା ମୁଚୁ ମୁଚୁ ମୁଗୁନି ପଥର ଭଳି ଦେହଟା ତେଲ ନିଗିଡ଼ିବା ଭଳି ଚହଟ ଚିକ୍କଣ ଦିଶୁଥିଲା । ସେଇ ଦେହ ଏବେ ଶୁଖି ଚମ ଧୁଡୁଧୁଡୁ । କିଏ ନଶାଣି କରିଦେଲା ଲୋକଟାକୁ ଯେ ସିଏ ଆଉ ଅଣାକରେ ନାହିଁ । ଓଷଦି ମୋଷଦି ପଥିପାଣି ଟିକେ ପାଇଁ ପଇସାଟିଏ ନାହିଁ । ତା ସାଙ୍ଗକୁ ଏତେ ବଡ଼ ମହାବିପତ୍ତି । କିଛି କୂଳ କିନାରା ପାଇଲା ନାହିଁ ସୋନାଦି । ଏଇ ଝୁପୁଡି ଖଣ୍ଡକ ଛଡ଼ା ତାର ଆଉ କିଛି ସମ୍ବଳ ନାହିଁ । ଜାତିରେ ମିଶିବାକୁ ହେଲେ ତାକୁ ବେଘର ହେବାକୁ ହେବ । ସିଏ ପଛେ ଭୋକ ଉପାସରେ ଥାଉ, ଅଜାତିଆ ହେଇଥାଉ । ମୁଣ୍ଡ ଉପରେ ତାର ଚାଳ ଖଣ୍ଡେ ଥାଉ । ସେ ଆଉ ଆଗକୁ ଚିନ୍ତାକଲା ନାହିଁ, କି ଦିଶାରୀ କଥାରେ ପଡ଼ିଲା ନାହିଁ । ସ୍ୱାମୀ ସ୍ତ୍ରୀ ଦୁହେଁ ଅଛୁଆଁ ଅଜାତିଆ ଏକ ଘରକିଆ ହେଇ ରହିଲେ । ବାବୁ ଘରୁ କାମ ଛାଡ଼ିବାକୁ ହେଲା ।

ରୋଗ ଯନ୍ତ୍ରଣା ସାଙ୍ଗକୁ ମାନସିକ ଚାପ, ପୁଣି ଭୋକ ଉପାସ, ବୈଶାଖୁର ଶରୀର ଆଉ ସହିପାରିଲା ନାହିଁ । ସବୁ ଯନ୍ତ୍ରଣାକୁ ଫାଙ୍କିଦେଇ ସୋନାଦିକୁ ଏକା କରି ସିଏ ଚିରଦିନ ପାଇଁ ଆଖିବୁଜି ଦେଲା । ସୋନାଦି ମୁଣ୍ଡ ଉପରେ ଛିଡ଼ିପଡ଼ିଲା ଆକାଶ ।

ବୈଶାଖୁର ଶବ କାନ୍ଧରେ ବୋହି ମଡ଼ାସାଙ୍ଗିଆ ମାନେ ଅଜାତିଆ ହେଲେ । ସୋନାଦି ସେମାନଙ୍କୁ ଜାତି କରେଇଲା । ମଦ ପାଣି, କୁକୁଡା ବକଡ଼ା ଭୋଜିଭାତ ସବୁ ଖୋଲା ହାତରେ ଖର୍ଚ୍ଚ କଲା । ବୈଶାଖୁର ସବୁ କ୍ରିୟା କର୍ମ ସରିଲା ବେଳକୁ ନିଆଶ୍ରୀ ହୋଇ ଯାଇଥିଲା ସୋନାଦି । ମୁଣ୍ଡ ଗୁଞ୍ଜିବାକୁ ଦୁନିଆରେ ତାର ଆଉ ନିଜର ହୋଇ ଚାଖଣ୍ଡେ ଜାଗା ନଥିଲା । ତା ଘରଟା ବନ୍ଧା ପଡ଼ିଥିଲା ସାଉକାର ଘରେ ।

ବୈଶାଖୁ ଯିବାର ଆଜିକି ପଚିଶ ଦିନ ହେଲାଣି । ସୋନାଦି ଦିନ ଗଣୁଥିଲା । ମାସକ ଭିତରେ ଘର ଛାଡ଼ିବ ବୋଲି ସେ ସାଉକାର ପାଖରେ କଣ୍ଟ କରିଥିଲା । ଆଉ ଦିନ ପାଞ୍ଚଟା । ସାଉକାର ଦୁଇଥର ଆସି ସୋନାଦିକୁ ତାଗିଦ୍ କଲାଣି ।

ତାକୁ ଦଶଦିଗ ଅନ୍ଧାର ଦିଶିଲା ।

ଏଇ ଝାଟିମାଟିର ଝୁପୁଡ଼ି ଘରଟି ଦିନେ ତା ପାଇଁ ଥିଲା ସ୍ୱର୍ଗ । ଚଟିଆ ଚଢ଼େଇ ବସା ବାନ୍ଧିଲା ପରି ଖଣ୍ଡେ ଖଣ୍ଡେ କାଠିକୁଟା ସଂଗ୍ରହ କରି ଦୁହେଁ ଗୋଟାଏ ସୁନ୍ଦର ସଂସାରର ସ୍ୱପ୍ନ ଦେଖିଥିଲେ । ବୈଶାଖୁ କୋଦାଳରେ ମାଟିହାଣି ଗଦେଇ ଦେଇଥିଲା ତ ସୋନାଦି ମାଠିଆ ମାଠିଆ ପାଣି ଢାଳି ତାକୁ ଭିଜେଇ ଦେଇଥିଲା । ବୈଶାଖୁର ଦମ୍ଭିଲା ପାଦ ସେଇ ମାଟିକୁ ଚକଟି ଚକଟି ଲହୁଣି ପରି କରିଥିଲା । ସୋନାଦି ଗାଣ୍ଡୁଆ ଗାଣ୍ଡୁଆ

ମାଟି ବୈଶାଖୁ ହାତକୁ ବଢ଼େଇ ଦେଉଥିଲା ଓ ସିଏ ଦୁଆକୁ ଦୁଆ କାନ୍ଥ ଦେଇ ଚାଲିଥିଲା । ଦୁହିଁଙ୍କର ଝାଳ ଓ ରକ୍ତକୁ ଏକାକାର କରି ଠିଆ ହେଇଥିଲା ଝୁପୁଡ଼ି । ତାର ପ୍ରତି ଧୂଳି କଣାରେ ସିଏ ଅନୁଭବ କରୁଥିଲା ବୈଶାଖୁର ପ୍ରାଣସ୍ପନ୍ଦନ । ଘରର ମୋହରୁ ସେ ମୁକ୍ତ ହୋଇ ପାରୁନଥିଲା ।

ସାଉକାର ଘରେ କଣ୍ଟକବଲା କରି ଦୁଇ ହଜାର ଟଙ୍କା ଆଣିଥିଲା ସୋନାଦି । ସେଇ ଟଙ୍କାରେ ବୈଶାଖୁର କ୍ରିୟାକର୍ମ ସାରିଥିଲା । ଟଙ୍କା ନ ଫେରାଇବା ପର୍ଯ୍ୟନ୍ତ ସେ ଘର ଆଉ ତାର ହେଇ ରହିବ ନାହିଁ । ସୋନାଦି ଶୂନ୍ୟ ଦୃଷ୍ଟିଟାଏ ବୁଲେଇ ଆଣିଲା । ସ୍ୱର୍ଗ ବୋଲି ଅନୁଭବୁଥିବା ସେଇ ଝୁପୁଡ଼ିଟି ଉପରେ । ଆଖି ଆଗରେ ନାଚିଗଲା ବୈଶାଖୁର ମୁହଁ । ତାକୁ ମନେ ହେଲା ବୈଶାଖୁ ଯେମିତି ତାକୁ କହୁଛି-

କେତେ ଶରଧାରେ ଆମେ ଏ ଘର ଠିଆ କରିଥିଲୁଲୋ ସୋନାଦି । ତୁ କ'ଣ ତାକୁ ସାଉକାର ହାତରେ ଟେକିଦେବୁ? ଗତବରଷ ତୋ ବାପା ମାଆ ଭାଇ ଭାଉଜ ସାଥିରେ ଆନ୍ଧ୍ର ଯିବାପାଇଁ କହୁଥିଲୁ । ମୁଁ ତ ପାରିଲିନି । ତୁ ଯା ! ଇଟା କାମ କରି ପଇସା ଯୋଗାଡ଼ କରିବୁ । ସଅଳ ସଅଳ ଫେରି ଆସିବୁ । ମୁଁ ଜଗିଛି ଆମ ଘର । କାଉଟିଏ ବି ବସେଇ ଦେବିନି ଆମ ଘରେ । ସାଉକାର ଏ ଘର ନେଇ ଗଲେ ଦିଶାରୀ ଗୁଣିଆ କରି ମତେ ତଡ଼ି ଦବ ଲୋ ସୋନାଦି ! ମୁଁ ରହିବି କୋଉଠି ?

ତୁ ଯା ତୋର କିଛି ଅସୁବିଧା ହବନାଇଁ ।

ଚମକି ପଡ଼ିଲା ସୋନାଦି । ସେ ସ୍ୱପ୍ନ ଦେଖୁନାହିଁ ତ ?

ଇୟେ କ'ଣ ତା ନିଜ ମନର କଥା ! ନା ସତକୁ ସତ ବୈଶାଖୁର ଆତ୍ମା ତାକୁ ପଠଉଚି ଆନ୍ଧ୍ରା !

ସେ ଯିବ, ନିଶ୍ଚୟ ଯିବ । ନ ହେଲେ ବୈଶାଖୁର ଆତ୍ମା ଶାନ୍ତି ପାଇବ ନାହିଁ । ଯୋଉ ଦିନ ଦୁଇ ହଜାରଟଙ୍କା ଯୋଗାଡ଼ ହେବ, ସେଇ ଦିନ ସେ ଫେରି ଆସିବ । ସାଉକାର ହାତରୁ ଘର ମୁକୁଳେଇବ ।

ଗୋଟାଏ ଆତ୍ମବିଶ୍ୱାସର ଆଭାରେ ସେ ଉକୁଟି ଉଠିଲା । ତା ଦେହରେ ଜାଗି ଉଠିଲା ଶତସିଂହର ବଳ । ସିଏ ଅଣ୍ଟା ଭିଡ଼ିଲା । ମନକୁ ମନ ବିଡ୍ ବିଡ୍ ହେଇ କହିଲା ତୁ ଘର ଜଗିଥା ! ମୁଁ ଯାଉଚି ।

ତା ପରଦିନ ।

ରାତି ପାହିଲା । ସବୁଦିନ ପରି ସେଦିନ ବି ସେ ଗାଁରେ କୁକୁଡ଼ା ଡାକିଲା । କାଉ ରାବିଲା । ଗାଁ ଦାଣ୍ଡ ଗାଈ ଗୋରୁଙ୍କ ହମ୍ବା ହମାଳରେ ପୂରି ଉଠିଲା । ପିଲା ଛୁଆଙ୍କ ହୋ ହଲ୍ଲାରେ ଦାଣ୍ଡ ଉଛୁଳି ପଡ଼ିଲା । କିନ୍ତୁ ଖୋଲିଲା ନାହିଁ ସୋନାଦିର ଦୁଆର । ତା ବାଉଁଶ

ତାଟି କବାଟରେ ଝୁଲୁଥିଲା ଗୋଟାଏ କଳଙ୍କିଲଗା ଟିପାତାଲା । କୁଆଡ଼େ ସେ ଗଲା ଚଢ଼େଇ ଚିରୁଗୁଣୀ ବି ଜାଣିଲେ ନାହିଁ ।

ଦିନ କେତେ ଗାଁ ଲୋକେ ସୋନାଦି ଓ ବୈଶାଖୁକୁ ମନେ ରଖିଲେ । ତା ପରେ ସେ ସ୍ମୃତିରେ ଭଟ୍ଟା ପଡ଼ିଲା । ସୋନାଦି ଓ ବୈଶାଖୁ ବୋଲି ଦୁଇଟା ପ୍ରାଣୀଙ୍କୁ ଯେ ସେମାନେ କେବେ ଜାଣିଥିଲେ, ତା' ଦୁଃଖ ସୁଖରେ ଆହା ପଦେ କହିଥିଲେ ସେ କଥା ଭୁଲିଗଲେ ।

ସୋନାଦି କିନ୍ତୁ ଭୁଲିନଥିଲା ଗାଁକୁ । ତା ଭିଟା ମାଟିକୁ । ତା ଟୁଙ୍ଗୀ ଘରକୁ । ବୈଶାଖୁର ସ୍ମୃତିକୁ । ଟଙ୍କା ଦୁଇ ହଜାର ଯୋଗାଡ଼ କରିବାକୁ ତାକୁ ପୂରାପୂରି ଲାଗିଗଲା ଦୁଇ ବରଷ । ସାଉକାର ବଡ଼ ରାଢ଼ । ମୂଳ ସହ କଳନ୍ତର ନ ନେଲେ ସେ ଛାଡ଼ିବ ନାହିଁ । ମଣ୍ଡେଇ ପରବ ପାଇଁ ସାଥୀ କୁଲି ମାନେ ସପ୍ତାହକ ପାଇଁ ଫେରିଲେ ଜନମ ମାଟିକୁ । ସୋନାଦି ଫେରିଲା ତାଙ୍କ ସାଥୀରେ । ଓଳିଏ ଖାଇ ଓଳିଏ ନ ଖାଇ, ପେଟରୁ କାଟି ମାଙ୍କଡ ମୁଠି କରି ରଖିଥିବା ଟଙ୍କାତକ ଛୋଟିଆ ଟିଣ ଡବାଟିରେ ରଖି ଅଣ୍ଟାତଳେ ଖୋସିଥିଲା ।

ଗାଁ ପାଖ ଛକରେ ପହଞ୍ଚିଲା ବେଳକୁ ମୁହଁ ସଂଜ । ବସ୍‌ରୁ ଓହ୍ଲେଇ ପଡ଼ି ସ୍ୱସ୍ତିର ନିଃଶ୍ୱାସ ନେଲା ସୋନାଦି । ଏଠୁ ଗାଁ ଡାକେ ବାଟ । ତା ଅଣ୍ଟା ତଳେ ଜାକିଥିବା ଡବାଟି ଉପରେ ସେ ହାତ ବୁଲେଇ ଆଣିଲା । ସବୁ ଠିକ୍ ଅଛି । ସତେ ଅବା ଗଡ଼ଟାଏ ଜିତି ସେ ଫେରୁଛି । ତା ଗୋଡ଼ ତିନିଠେଇଁରେ ପଡୁଥିଲା । ଏକ ଅଜଣା ଉଲ୍ଲାସରେ କେତେବେଳେ ସେ ଗାଁ ମୁଣ୍ଡରେ ପହଞ୍ଚି ସାରିଲାଣି ନିଜେ ଜାଣି ପାରିଲାନି ।

ଗାଁ ମୁଣ୍ଡରେ ପୋଲିସ ଛାଉଣୀ । ଆଶ୍ଚର୍ଯ୍ୟ ହେଲା ସୋନାଦି । ରାସ୍ତା ଭୁଲି ସିଏ ଆଉ କୋଉ ଗାଁକୁ ପଶି ଆସିନି ତ !

ଆଗରେ ଭୀମା ଦେବତା ଓ ଧରତୀନ୍ ଦେବୀ । ତା ଗାଁର ଇଷ୍ଟ ମାହାପୁରୁ । ଆଣ୍ଠେଇ ପଡ଼ି ମୁଣ୍ଡିଆଟିଏ ମାରିଲା ସୋନାଦି । ସେ ରାସ୍ତା ଭୁଲିନି । ଉଠି ଠିଆ ହେଲା । ଗାଁ ଭିତରକୁ ଯିବାକୁ ପାଦ ବାହାର କଲା । ମୁହଁ ଅନ୍ଧାର ହେଇ ଆସିଲାଣି ସେତେବେଳକୁ ।

ଏୟ ! କିଏ ବେ ସେଠି ?

କାହାର ଘାଘଡ଼ା କଣ୍ଠରେ ଚମକି ପଡ଼ିଲା ସୋନାଦି । ସେ ମୁହଁ ବୁଲେଇ ଚାହିଁଲା । ଅଚିହ୍ନା ଅଜଣା ଖାକି ପୋଷାକ ପିନ୍ଧା ପୋଲିସ ବାବୁଙ୍କୁ ଦେଖି ସେ ଭୟରେ ଥରିବାକୁ ଲାଗିଲା । ତା ପାଟି ଖନି ମାରିଗଲା । କ'ଣ କହିବ କହିବ ହେଉ ହେଉ ଭୟାର୍ତ୍ତ ସ୍ୱରରେ ତା ପାଟିରୁ ବାହାରି ପଡ଼ିଲା ।

ମୁଁ ସୋନାଦି । ଆନ୍ଧ୍ରରୁ ଆସିଛି ।

ସେଇ ମୁହଁ ଅନ୍ଧାରରେ ଆଉ ଗୋଟାଏ ରୁକ୍ଷ ସ୍ୱର କହିଲା ଶଳା ନକ୍ସଲ ମାଇକିନାଟା ବେ !

ପାଖକୁ ପାଖ ଆଉ ଗୋଟାଏ ସ୍ୱର

ଘୋଷାରି ଆଣ ତାକୁ ।

ତା'ପରେ ସମ୍ମିଳିତ ଅଟ୍ଟହାସ୍ୟ ।

ସୋନାଦିକୁ ଦଶଦିଗ ଅନ୍ଧାର ଦେଖାଗଲା । ଜୀବନ ବିକଳରେ ସେ ଗାଁ ଭିତରକୁ ଧାଇଁବାକୁ ଲାଗିଲା । ଆଉ ପାରିଲା ନାହିଁ । ସେ ଅନୁଭବ କଲା ଦୁଇ ତିନିଟା କ୍ଷୁଧିତ ପଶୁ ଝାମ୍ପି ପଡୁଛନ୍ତି ତା ଉପରେ । ଶୂନ୍ୟେ ଶୂନ୍ୟେ ତାକୁ ଟେକି ନେଉଛନ୍ତି ଛାଉଣୀ ଭିତରକୁ । ତାର କାତର ଚିତ୍କାର ଅନୁନୟ ବିନୟ କିଛି ସ୍ପର୍ଶ କରୁନଥିଲା ପଶୁମାନଙ୍କୁ । ସମସ୍ତେ ଥିଲେ ମଦ ନିଶାରେ ଭୋଳ ।

ଦେଖ ! ଦେଖ ହୋ କୋଉଠି କ'ଣ ଲୁଚେଇ ରଖିଚି ବଜ୍ଜାତ୍ ମାଇକିନା ।

ପୁଣି ସମ୍ମିଳିତ ଅଟ୍ଟହାସ୍ୟ ।

ଶତ ଚେଷ୍ଟାକରି ସୋନାଦି ଅଟକେଇ ପାରିଲା ନାହିଁ ତା ଶରୀରର ଶେଷତମ ଆବରଣଟିକୁ । ଅଣ୍ଟା ଚାରିପଟୁ ଶାଢ଼ି ସହ ତା ପଇସା ଡବାଟି ତଳେ ପଡ଼ି ଏକ ଆତବ ଶବ୍ଦ ସହ ଗଡ଼ିଗଲା କିଛି ଦୂର ପର୍ଯ୍ୟନ୍ତ । ହେଇଟି ବମ୍ । ବମ୍ ରଖିଛି ଅଣ୍ଟା ତଳେ ।

ଆହୁରି ଗୋଟେ ଅଟ୍ଟହାସ୍ୟ ।

ଗୋଟାଏ ପେଟୁଆ ଲୋକ ଆଣ୍ଠେଇ ପଡ଼ି ଡବାଟିକୁ ଖୋଲିବାକୁ ଚେଷ୍ଟା କରୁଥିଲା ।

ଆଉ କେତେଟା ହିଂସ୍ର ପଶୁ ସୋନାଦିର ଦେହ ମୁଣ୍ଡ ଥାନ ଅଥାନକୁ ରାମ୍ପି ବିଦାରି ପକାଉଥିଲେ ।

ସୋନାଦିର ଚିତ୍କାର ଧୀରେ ଧୀରେ ସେଇ ଅନ୍ଧାର ଭିତରେ ମିଳେଇ ଯାଉଥିଲା । ସେ ଚେତା ହରାଇ ତଳେ ପଡ଼ିଗଲା । କ୍ଷୁଧିତ ବନ୍ୟ ପଶୁଭଳି ଗୋଟାକ ପରେ ଗୋଟାଏ ତା ଶରୀରରୁ ସେମାନେ ପୁଳା ପୁଳା ମାଉଁସ ଓଟାରି ଖାଇ ଯାଉଥିଲେ ।

ଘଟଣା ଘଟିବାର ଦୁଇଦିନ ପରେ ଗାଁ ଲୋକ ଚୁପ୍‌ଚାପ୍ ହେଲେ । ଘଞ୍ଚ ଜଙ୍ଗଲ ମଝିରେ ଗୋଟାଏ ପଥର ଚଟାଣ ପାଖରେ ପଡ଼ିଛି ଗୋଟାଏ ମାଇକିନିଆର ଶବ ।

ପରଦିନ ସମ୍ବାଦପତ୍ରମାନଙ୍କରେ ସମ୍ବାଦ ବାହାରିଲା– ପୋଲିସ ଏନ୍‌କାଉଣ୍ଟର୍‌ରେ ମହିଳା ନକ୍ସଲର ମୃତ୍ୟୁ ।



# ଯା ଦେବୀ ସର୍ବ ଭୂତେଷୁ

ଆଜି ଏଭଳି ଏକ ସତ୍ୟପାଠ କରିବାରେ ମୋର ଦ୍ୱିଧାନାହିଁ ଯେ ସ୍କୁଲ ଜୀବନରେ ସାର୍ ମାନଙ୍କଠାରୁ ସଦା ସର୍ବଦା ଗଧ, ବୋକା, ଅକାଳ କୁଷ୍ମାଣ୍ଡ, ଅପୋଗଣ୍ଡ' ଉପାଧିମାନ ପାଉଥିବା ପଛ ବେଞ୍ଚର ପିଲାଟିଏ ଶିକ୍ଷା ବିଭାଗର ସର୍ବୋଚ୍ଚ ଅଫିସରଟିଏ ହେବାର ଯେଉଁ ସୌଭାଗ୍ୟ ମୁଁ ଅର୍ଜନ କରିପାରିଛି, ତା' ମୂଳରେ ଜଣେ ନାରୀର ପ୍ରଚ୍ଛନ୍ନ ପ୍ରେରଣା ରହିଛି । ପ୍ରତ୍ୟେକ ସଫଳ ପୁରୁଷ ପଛରେ ଜଣେ ନାରୀର ପ୍ରେରଣା ରହିଛି ଭଳି ଚିରାଚରିତ ଘଷରା ଉକ୍ତିକୁ ଉପଲକ୍ଷ୍ୟ ଦେବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଏଇଠି କହି ରଖୁଛି, ଯେଉଁ ନାରୀଟିର ପ୍ରେରଣା କଥା କହୁଛି ମୋ ସଫଳତା ପାଇଁ ସେ ତା ଇଷ୍ଟଦେବ ପାଖରେ କେବେ ବି କାମନା କରିନାହିଁ । ମୋ ଚଲାପଥକୁ ସୁରଭିତ କରିବା ପାଇଁ ସେ ତିଳେମାତ୍ର ଉଦ୍ୟମ କରିନାହିଁ, ତଥାପି ପରିଣତ ବୟସରେ ମୁଁ ସ୍ୱୀକାର କରୁଛି, ସେ ମୋର ହିତାକାଙ୍କ୍ଷିଣୀ, ମୋର ପ୍ରେରଣା ଦାୟିନୀ । ଏଇ ମହିୟସୀ ନାରୀଟି ସଂପର୍କରେ କିଛି କହିବାକୁ ହେଲେ ମୋ ଶୈଶବର ସୁଖସ୍ମୃତିରୁ ଅଧ୍ୟାୟଟିଏ ରୋମନ୍ଥନ କରିବାକୁ ହେବ ।

ଶୈଶବରେ ମୋ ବୁଦ୍ଧିର ପରିସୀମା ମୋ ଆଈର ପଣତରେ ବନ୍ଧା ହୋଇଥିଲା । ମୋ ବୋଉ ତା'ର ଥିଲା ଏକମାତ୍ର ସନ୍ତାନ । ତାକୁ ଶାଶୁଘର ପଠେଇବା ପରେ ଆଈ ସଂପୂର୍ଣ୍ଣ ଏକାକୀ ହୋଇ ପଡ଼ିଲା । ଅଜା ତ ଆଗରୁ ଯାଇଥିଲେ । ଆଈର ବଞ୍ଚିବା ପାଇଁ ଗୋଟିଏ ସାହାରାର ଆବଶ୍ୟକତା ଥିଲା । ତା ସାଂଗକୁ ଚିର ରୁଗ୍‌ଣା ମୋ ବୋଉର ମୁଁ ଥିଲି ଯମଜ ସନ୍ତାନରୁ ଜଣେ । ଆଈର ଗେଲବସର ଝିଅ ମୋ ଅଳସେଇ ବୋଉ ଯେ ଆମ ଦୁହିଁଙ୍କର ଲାଳନପାଳନ ପାଇଁ ସଂପୂର୍ଣ୍ଣ ଅସମର୍ଥ ତାହା ଆଈ ଛଡ଼ା ବୋଧହୁଏ ଆଉ କେହି ଭଲଭାବରେ ବୁଝି ନଥିଲେ । ସେଥିପାଇଁ ମୁଁ ବୋଉର ମୁହଁ ଭଲକରି ନ ଚିହ୍ନୁଣୁ ମୋ ଆଈ ମତେ ଧରି ଆସିଥିଲା ତା ପାଖକୁ । ମୋ ଶୈଶବ ବିତିଥିଲା ଆଈର ଉବୁଟୁବୁ ଗେହ୍ଲାପଣ ଭିତରେ । ଆଈର ଅମୁହାଁ ଶ୍ରଦ୍ଧାସିକ୍ତ ମମତା ମୋ ଶୈଶବକୁ ଅର୍ଦ୍ଦାଳୁଆ କରି ଦେଇଥିଲା । ମୋ ଦେହରେ କେହି ଟିକେ ହାତଦେଲେ ସେ ଅଣ୍ଟାରେ ଲୁଗାଭିଡ଼ି ଝଟାପଟା କଳି ଲଗଉଥିଲା । ଆଈର ଛତ୍ରଛାୟା ତଳେ ମୁଁ ଗୋଟିଏ ନିର୍ଘାତ ବାଲୁଙ୍ଗାଟିଏ ହୋଇ ବଢ଼ିଲି । ବହି, ଖାତା, ପେନ୍, ପେନ୍‌ସିଲ୍ କାଳି ଇତ୍ୟାଦି ଠିକ୍ ସମୟରେ ଆଈ

ପାଖରୁ ମିଳଯାଉଥିଲା ସିନା ମୋର କିନ୍ତୁ ସେମାନଙ୍କ ସହ ଘନିଷ୍ଠତା ନଥିଲା । ତଥାପି ମୁଁ କେବେ କୌଣସି ଶ୍ରେଣୀରେ ଅଟକି ଯାଉ ନଥିଲି । ମୋର ଆଈର ଗାଉଁଲି ମୁଣ୍ଡପାଇଁ ସେତିକି ଥିଲା ଅଷ୍ଟଐଶ୍ୱର୍ଯ୍ୟପ୍ରାପ୍ତି । ତା' ନାତିଟା ଯେ ଆଗକୁ ଆଗକୁ ଯାଉଛି ଏଇ ଥିଲା ତା' ପାଇଁ ଆତ୍ମତୃପ୍ତି ।

ମୋର ମନେପଡୁଛି- ସେତେବେଳେ ମୁଁ ପଢୁଥିଲି ପଞ୍ଚମ ଶ୍ରେଣୀରେ । ସ୍କୁଲକୁ ବାବୁ ଆସିଥିଲେ (ସେତେବେଳେ ସ୍କୁଲ ଇନ୍‌ସପେକ୍ଟରମାନଙ୍କୁ ଆମେ ସବୁ ବାବୁ କହୁଥିଲୁ) । ଆଈର କାଳିଗାଈ କ୍ଷୀରରେ ଗଢିଉଠିଥିବା ମୋ ରାଜକୀୟ ଶରୀର ଅଥଚ ବୋକା ବୋକା ଲାଗୁଥିବା ମୋ ମୁହଁ ବୋଧହୁଏ ତାଙ୍କୁ ବେଶ୍ ଆକର୍ଷିତ କଲା । ତାଙ୍କ ଉପସ୍ଥିତି ସେତେବେଳକୁ ଶ୍ରେଣୀଗୃହକୁ ମୃତବତ୍ ନିରବତା ପ୍ରଦାନ କରିଥିଲା । ଶ୍ରେଣୀ ଶିକ୍ଷକ ସୁର ସାର୍‌ଙ୍କଠାରୁ ଆମ୍ଭମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଉଦ୍‌ବିଗ୍ନତାର ସହ ବାବୁଙ୍କ କାର୍ଯ୍ୟକଳାପକୁ ଅପେକ୍ଷା କରିଛୁ । ସେ ଚାଲ୍ ଚାଲ୍ ହେଇ ମୋ ପାଖକୁ ଆସିଲେ ଓ ମୋ କାନ୍ଧରେ ହାତ ପକେଇ କହିଲେ-ବନାନ କଲୁ ବିଷ୍ଣୁ । ଯୁକ୍ତାକ୍ଷରର ବନାନ ସବୁ କେବେ ବି ମୋ ମୁଣ୍ଡରେ ପଶେନାହିଁ । ଏ ଶବ୍ଦଟାକୁ ସାର୍ କେବେ କ୍ଲାସ୍‌ରେ ବନାନ କରି ଆମକୁ ପଢେଇଲା ଭଳି ମୋ ମନେ ହେଲା ନାହିଁ । ତଥାପି ଏଭଳି ଗୋଟିଏ ଭାବ ଗମ୍ଭୀର ପରିବେଶ ଭିତରେ ମୋ ଅକ୍ଷମତା ପ୍ରଦର୍ଶନ ଦ୍ୱାରା ମୋ ନିର୍ବୋଧ ପଣକୁ ସର୍ବସମକ୍ଷରେ ସାବ୍ୟସ୍ତ କରିବାକୁ ଚାହିଁଲି ନାହିଁ । ଗଭୀର ଆତ୍ମବିଶ୍ୱାସର ସହ କହିଲି

-'ବ'ରେ 'ଇ'କାର ମୂର୍ଦ୍ଧନ 'ଷ' ତଳେ ଟୁଁ । ବାସ୍-ମୋ ପାଟିରୁ କଥା ସରିଛି କି ନାହିଁ ମୁଁ ଅନୁଭବକଲି ବିସ୍ଫୋରଣଟିଏ । ଅତ୍ୟନ୍ତ ସମ୍ଭ୍ରମତାର ସହ ଆମେ ସମ୍ମାନ ଦେଉଥିବା ବାବୁ ଆଉ ବାବୁ ହେଇ ନାହାଁନ୍ତି । ସେ ଉଚ୍ଚ ସ୍ୱରରେ 'ହୋ, ହୋ' ହୋଇ ହସି ଉଠିଲେ । ତା ସାଙ୍ଗକୁ ସାରା କ୍ଲାସର ପିଲାଙ୍କର ହସ କରତାଳି । ମୋର କୋଉଠି ଭୁଲ୍ ରହିଲା ସେ କଥା ତର୍ଜମା କରିବା ପୂର୍ବରୁ ମୁଁ ସୁରସାର୍‌ଙ୍କ ମୁହଁକୁ ଚାହିଁଲି । ସେ ଦିଶୁଥିଲେ କାନ୍ଦ କାନ୍ଦ । ତଥାପି ଦୁଇଫାଳ ଓଠକୁ ନେଫେଡ଼ି ତାଙ୍କ ପାନଖିଆ ଦାନ୍ତ କେତେଟା ବାହାରକୁ ଦିଶୁଥିଲା । ସୁରସାରଙ୍କୁ ଏତେ ଦୟନୀୟ ମୁଁ ଆଉ କେବେ ଦେଖି ନଥିଲି ।

ଇଯେ ହେଉଛି ମୋ ଶୈଶବକାଳୀନ ବୌଦ୍ଧିକତାର ଏକ ନମୁନା । ମୁଁ ହାଇସ୍କୁଲ ଆସିଲି । ସେତେବେଳକୁ ଯେ ମୋର ବୌଦ୍ଧିକତାର ସୀମା ବେଶୀ ଗୁଡାଏ ବ୍ୟାପି ଯାଇଥିଲା, ସେୟା ନୁହେଁ, କିନ୍ତୁ ସେଇ ସିଂହାଣୀନାକୀ ନାକ କାନ୍ଦୁରୀ ଝୁମ୍ପୁରୀ ମୁଣ୍ଡି ମୀନୁ ଆକସ୍ମିକ ସୁନ୍ଦରୀ ଓ ଆକର୍ଷଣୀୟା ହୋଇପଡ଼ିବାଟା ମୋ ପାଇଁ ଗମ୍ଭୀର ସମସ୍ୟା ସୃଷ୍ଟିକଲା । ପିଲାଦିନୁ ବହିପତ୍ର ସାଙ୍ଗେ ମୋର ଭଲ ସଂପର୍କ ନଥିଲା । ବାଗୁଡ଼ି ଖେଳ, ନଈ ପହଁରା, ସାଙ୍ଗମାନଙ୍କ ସହ ଗୁଲିଖଟି କରି ବ୍ୟୟିତ ହେଉଥିବା ସମୟ ଏବେ ଭିନ୍ନ ବାଟ ଧରିବାର ମୁଁ ଅନୁଭବ କଲି । ସେଇ ଗୋରାତକ୍ ତକ୍, ନକ୍ ନକୀ ଆଉ ଡବଡବୀ

ଝିଅଟାକୁ ମୁଁ କେବେ ଗୁରୁତ୍ୱ ଦେଇ ନଥିଲି । କ୍ଲାସରେ ପ୍ରଥମ, ଦ୍ୱିତୀୟ କିମ୍ବା ତୃତୀୟ ହେବାର ଦୌଡ଼ରେ ବି ମୁଁ କେବେ ସାମିଲ ନଥିଲି । ଏମିତି କିଛି ସ୍ୱପ୍ନ ଦେଖିବା ପାଇଁ ମୋ ଆଈ କିମ୍ବା ବାପାମାଆଙ୍କଠୁଁ ମୁଁ କେବେ ବି ପ୍ରେରଣା ପାଇ ନଥିଲି । ମୋର ଅନ୍ୟ ପାଞ୍ଚ ଭାଇ ଭଉଣୀଙ୍କ ଜଞ୍ଜାଳରେ ବାପାମାଆ ବ୍ୟସ୍ତ ଥିଲେ । ଚବିଶ ଘଣ୍ଟା ସୁଆଦିଆ ବ୍ୟଞ୍ଜନ କରି ମୋ ପେଟକଥା ବୁଝିବାରେ ଆଈ ବ୍ୟସ୍ତ ଥିଲା । ମୋ ଦେହରେ ସେ ଧୂଳି ପକେଇ ଦେଉ ନଥିଲା । ମୋ ବହିପତ୍ର ଓ ସ୍କୁଲରେ ଯାହା ପ୍ରାପ୍ୟ ସାଙ୍ଗକୁ ଗଣେଶ ପୂଜା ଓ ସରସ୍ୱତୀ ପୂଜା ଚାନ୍ଦା ଦେବାରେ ସେ କେବେ ଅବହେଳା ପ୍ରଦର୍ଶନ କରୁନଥିଲା । ଆହୁରି ମଧ୍ୟ ଏ ପୂଜା ମାନଙ୍କରେ ସବୁ ଚାଟଙ୍କଠାରୁ ମୋ ପାଇଁ ଉନ୍ନତମାନର ଭୋଗ ଡାଲା ସଜେଇ ସେ ତା କର୍ତ୍ତବ୍ୟ ଶେଷ କରୁଥିଲା ।

ଏମିତି ଗୋଟିଏ ନିର୍ଜଞ୍ଜାଳ, ଲଗାମଛଡା ଓ ଫୁଲାଫାଙ୍କିଆ ଜୀବନ ବଞ୍ଚୁଥିବା ବେଳେ ମୀନୁ ମୋ ଜୀବନର ଧ୍ରୁବତାରା ଭଳି ମନେ ହେଲା । ମୀନୁ ସବୁବେଳେ କ୍ଲାସରେ ପ୍ରଥମ ହେଉଥିଲା । ଅଭୟ, କାଳିଆ, ଟୁଙ୍ଗା, ହରିଆ ଯେତେ ଅଣନିଶ୍ୱାସୀ ହୋଇ ଧାଇଁଲେ ବି ତା'ର ସୀମା ଅତିକ୍ରାନ୍ତ କରି ପାରୁନଥିଲେ । ସେଥିପାଇଁ କି କ'ଣ ସେମାନେ ମୀନୁପ୍ରତି ଅତ୍ୟନ୍ତ ଅସହିଷ୍ଣୁ ଥିଲେ । ସେମାନଙ୍କ ତାଲିକାରେ ମୀନୁ ଥିଲା ଅହଂକାରୀ, ଗର୍ବୀ ଓ ଉଦ୍ଧତ । ଟୁଙ୍ଗାକହେ- "ଟୋକୀଟା ସୁନ୍ଦର ମୁହଁ ଖଣ୍ଡେ ପାଇଚିତ ମାଷ୍ଟ୍ରମାନଙ୍କୁ ପଟେଇ ରଖିଛି । ପାଞ୍ଚ ଜାଗାରେ ତାକୁ ପଚିଶି ମିଳି ଯାଉଚି । ଆମେ ଯେତେ ଧାଇଁଲେ କ'ଣ ହବ ?" ଗୁଢ ରହସ୍ୟଟିଏ ଉନ୍ମୋଚନ କଲାପରି ଅଭୟ କହେ- "ଆରେ ହେ ! ତମେମାନେ ଜାଣିନ କିରେ ? ସାଇନ୍ସ ସାରଙ୍କ ସାଙ୍ଗରେ ତା'ର ବାହାଘର ପଡିଚି ବେ । ଏ ନୁଙ୍ଗୁରା ମାଷ୍ଟ୍ରପରା ସବୁ ସନ୍ଧ୍ୟାରେ ତା' ଘରକୁ ଚା' ପିଇବାକୁ ଯାଉଚି । ସାଇନ୍ସରେ ସିଏ ଅଧିକା ନମ୍ବର ପାଇବନି ତ କ'ଣ ତମେ ଶଳେ ପାଇବ !"

ମୀନୁ ସଂପର୍କରେ ଏସବୁ ମନ୍ତବ୍ୟ ମୋତେ ଆଦୌ ଭଲ ଲାଗେ ନାହିଁ । କେତେବେଳେ ନିଜ ଆବେଗକୁ ଚାପି ଦେଉଥିଲି ତ ପୁଣି କେତେବେଳେ ଝିଅଟାକୁ ନେଇ ଏମିତି ମନ୍ତବ୍ୟସବୁ ଆଦୌ ଭଲ ନୁହେଁ ବୋଲି ପ୍ରତିବାଦ କରୁଥିଲି । ସେମାନେ ବି ଛାଡ଼ିବାର ଜନ୍ତୁ ନଥିଲେ । ମୀନୁ ଓ ସାର୍ ମାନଙ୍କୁ ନେଇ ଆକ୍ଷେପଗୁଡ଼ାକ ଓଲଟିପଡ଼ି ମୋ ପାଖରେ କେନ୍ଦ୍ରୀଭୁତ ହୋଇ ଯାଉଥିଲା । ଆଖି ମିଟ୍‌କା ମାରି କଳିଆ କହେ- ମୀନୁ କଥା ପଡ଼ିଲେ ତୁ କାହିଁକି ଏମିତି ହେଉଚୁ ? ତାକୁ ଭଲ ପାଉଛୁ କିରେ ? ଅକ୍ଷିଆ କହେ- ମନେ ମନେ ଗୁଡ଼ ଖାଉଥା ! ଖାଉଥା ! ଏମିତି ମାଟିକାମୁଡି ପଡ଼ିଥିବୁ ଯେ-ସାତ ଜନମ ପର୍ଯ୍ୟନ୍ତ କାନ୍ଦୁଥିବୁ ।

ମତେ ଏ ମନ୍ତବ୍ୟ ଗୁଡାକ ଭଲ ଲାଗେ ନାହିଁ ସିନା କିନ୍ତୁ ମୀନୁପ୍ରତି ମୋ ଅବଚେତନରେ ଭାବଟିଏ ବସାବାନ୍ଧିବାର ମୁଁ ଅନୁଭବ କରୁଥିଲି । ସେ ଭାବ ଭିତରେ

ଚୁନା ଚୁନା ପ୍ରଜାପତି କେତେଟା ବିଭିନ୍ନ ଭଙ୍ଗୀରେ ଡେଣା ପଖାଳୁଥିଲେ । ଶ୍ରାବଣ ଆକାଶର ଇନ୍ଦ୍ରଧନୁରୁ ମେଞ୍ଚା ମେଞ୍ଚା ରଙ୍ଗ ଆଣି ମାଖି ହେଉଥିଲେ । ମୁଁ ଧୀରେ ଧୀରେ ଷ୍ଟୋର୍ଟିଭ୍ ହୋଇ ଉଠୁଥିଲି । ଏକ ଅଲଂଘନୀୟ ଦୂରତ୍ୱରେ ଥିବା ନୌକାଟିଏ ହାତପାହାନ୍ତାକୁ ଆସିବାର ସମ୍ଭାବନାରେ ମୁଁ ଉଲ୍ଲସି ଉଠୁଥିଲି । ମୀନୁ ବିଷୟରେ ଚିନ୍ତା କରିବାକୁ ମୋର ଯୋଗ୍ୟତା ଅଛି, ଏମିତି ଗୋଟିଏ ଚେତନା ମୋତେ ସର୍ବଦା ବିହ୍ୱଳିତ କରି ରଖିଲା । ସେତେବେଳକୁ ପ୍ରାଇମେରୀ ସ୍କୁଲ ଛାତ୍ରର ନିର୍ବୋଧପଣ ଧୀରେ ଧୀରେ ମୋ ପାଖରୁ ଦୂରୀଭୂତ ହୋଇ ଆସୁଥିଲା । ମୀନୁକୁ ନେଇ ସ୍ୱପ୍ନ ଦେଖିବା ଭିତରେ ତା' ପାଇଁ ନିଜକୁ ଯୋଗ୍ୟ କରିବାର ଗୁଡାଏ ସଂକଳ୍ପ ସୁଦ୍ଧା କରିପକାଇଥିଲି । ମୋଟାମୋଟି ଭାବରେ ମୀନୁ ଯେ ମୋ ପାଇଁ ଅପହଞ୍ଚ ନୁହେଁ, ଏମିତି ଗୋଟିଏ ଧାରଣା ମୋ ଭିତରେ ଜାଗରୁକ ହୋଇ ମତେ ଅତିଷ୍ଠ କଲା । ସେଇଥିପାଇଁ ମୁଁ ନିରବ ପ୍ରସ୍ତୁତି ଆରମ୍ଭ କରିଦେଲି ।

ସେତେବେଳକୁ ମୋର ଏକାଦଶ ଶ୍ରେଣୀ । (ଆମ ସମୟରେ ମେଟ୍ରିକ୍ ଏଗାର ବର୍ଷଥିଲା) ମୋ ଛାତ୍ର ଜୀବନର ଦୀର୍ଘ ଦଶ ଏଗାରବର୍ଷର ରେକର୍ଡ ଭାଙ୍ଗି ସେ ବର୍ଷ ମୁଁ ସମସ୍ତଙ୍କୁ ସ୍ତବ୍ଧ କରିଦେଲି । ଟେଷ୍ଟ ପରୀକ୍ଷାରେ ମୁଁ କ୍ଲାସ୍‌ରେ ତୃତୀୟ ସ୍ଥାନ ଅଧିକାର କରିଥିଲି । ବହୁ କୁଟୁମ୍ବୀ ମୋ ବାପା ବୋଉ ମୋ ପ୍ରତି ନିରାସକ୍ତ ଥିବାରୁ ସେମାନଙ୍କୁ ମୋ କୃତିତ୍ୱର ସମ୍ବାଦ ଜଣାଇବା ଆବଶ୍ୟକ ମଣିଲି ନାହିଁ । ଯିଏ ପ୍ରକୃତରେ ମୋର ଏ ସଫଳତାରେ ଗଦ୍‌ଗଦ୍‌ହୋଇ ପଡିଥାନ୍ତା ସେ ଏହାର ତାତ୍ପର୍ଯ୍ୟ ବୁଝିବାକୁ ଅସମର୍ଥ । ତାକୁ ମଧ୍ୟ ଏକଥା କହିଲି ନାହିଁ । ମୋର ସେଇ ସଫଳତାକୁ ମୁକୁଟ ମଣ୍ଡିତ କରି ମୀନୁ ଯେଉଁଦିନ ତା' ତରଫରୁ ମତେ ଅଭିନନ୍ଦନ ଜଣାଇଲା, ସେଦିନ ମୋ ଭିତରେ ଥିବା ଅନନ୍ତ ସମ୍ଭାବନାକୁ ମୁଁ ଉପଲବ୍ଧି କରିଥିଲି । ମୋ ବ୍ୟକ୍ତିତ୍ୱ ଉଦ୍ଦୀପିତ ହୋଇ ପଡ଼ିଥିଲା । କାଳିଆ, ଟୁଙ୍ଗା, ଅଖିଆଙ୍କ ଆଖିତଳେ ମୋ ପ୍ରତିଥିବା ଇର୍ଷାର ନିଆଁ ଝୁଲ ମୋ ଆତ୍ମବିଶ୍ୱାସକୁ ଆହୁରି ପ୍ରଜ୍ୱଳିତ କରିଥିଲା ।

ମୀନୁ ଓ ମୋଭିତରେ ଥିବା ଦୂରତ୍ୱ ସଂକୁଚିତ ହୋଇ ଆସୁଥିଲା । ତା'ର ବନ୍ଧୁତାର ହାତ ସେ ମୋ ଆଡକୁ ବଢେଇ ଆଣୁଥିଲା । ମୋ ଭଳି ଅପୋଗଣ୍ଡଟିକୁ ସେ ଯେମିତି ଜୀବନ୍ୟାସ ଦେଲା । ଶାପମୁକ୍ତ ଗନ୍ଧର୍ବଭଳି ଧୀରେ ଧୀରେ ମୋ ବ୍ୟକ୍ତିତ୍ୱ ପ୍ରକାଶୋନ୍ମୁଖୀ ହେଉଥିଲା । ମୀନୁ ସେ ପ୍ରକାଶକୁ ହାତମୁଠାରେ ଧରି ରଖି ଧୀରେ ଧୀରେ ଦିଗ୍‌ବିଦିଗ ବିଛାଉଥିଲା । ମୁଁ କେବଳ ମୀନୁମୟ ହୋଇ ଯାଉଥିଲି । ମୋ ଅସ୍ତିତ୍ୱର ପ୍ରତିଟି ଅଣୁ ପରମାଣୁ ଭିତରେ କେବଳ ମୀନୁର ସତ୍ତା ମୁଁ ଅନୁଭବ କରୁଥିଲି । ମୀନୁ ମୋର, ସଂପୂର୍ଣ୍ଣ ଭାବରେ ମୋର । ଏ ଚିନ୍ତା ଚେତନା ମୋତେ ସେତେବେଳକୁ ସଂପୂର୍ଣ୍ଣ କବଳିତ କରି ସାରିଲାଣି ।

ମୀନୁ ମୋ ଭିତରେ ବନ୍ଧୁତ୍ୱର ସୂତ୍ର ଆହୁରି ଦୃଢ଼ୀଭୂତ କରିଥିଲା ମୋ ଆଈଘର ବାଡିର ସ୍ୱାଦିଷ୍ଟ ପିଜୁଳି । ଆଈ ସେ ପିଜୁଳି ଗଛରେ କାଉଟିଏ ବି ବସେଇ ଦେଉ ନ ଥିଲା । ମୋ ବ୍ୟତୀତ ଆଉ କାହାରି ଛାଇ ପଡେନାହିଁ ସେଠି । ବୋଝ ବୋଝ ପିଜୁଳି ତୋଳି ସେ

ନିକଟସ୍ଥ ହାଟକୁ ପଠାଏ । ଶନିବାର ଓ ରବିବାର ଖରାବେଳେ ମୀନୁ ସେଇ ପିଜୁଳି ଲୋଭରେ ଆମ ଘରକୁ ଆସେ । ମୁଁ ପିଜୁଳି ଗଛମୂଳେ ବହିଖଣ୍ଡେ ଧରି ବସିଲେ ଖରାବେଳେ ମୋ ଆଈ ଟିକେ ବିଶ୍ରାମ ନିଏ । ସେଇ ସମୟତକ ଆମ ପାଇଁ ଐଶ୍ୱର୍ଯ୍ୟ ପ୍ରାପ୍ତିର ମାହେନ୍ଦ୍ର ମୁହୂର୍ତ୍ତ । ଆଈ ନାକର ଘୁଙ୍ଗୁଡି ବାରି ମୁଁ ଗଛକୁ ଚଢିଯାଏ ଓ ସବୁଠାରୁ ବଡ଼ ବଡ଼ ପାଚିଲା ପିଜୁଳି ଦୁଇ ଚାରିଟା ପକେଟରେ ଭରି ତଳକୁ ଓହ୍ଲେଇ ଆସେ । ମୀନୁ ଉତ୍ସୁକତାର ସହ ମୋ ଆସିବା ପଥକୁ ଚାହିଁ ରହିଥାଏ । ପିଜୁଳି ଗୁଡାକ ତା' ହାତକୁ ବଢେଇ ଦେଲାବେଳେ ମୋତେ ଲାଗେ ପୃଥିବୀର ସବୁଠାରୁ ମହାର୍ଘ ରତ୍ନ ମୁଁ ତା' ଆଞ୍ଜୁଳାରେ ଅଜାଡ଼ି ଦେଲି ।

ପିଜୁଳି ଗଣ୍ଡାକ ପାଇ ତା' ଓଠରେ, ଆଖିରେ, ଭୃଲତାରେ କହିବାକୁ ଗଲେ ତା'ର ସମଗ୍ର ଶରୀରରେ ଯେଉଁ ଆନନ୍ଦର ଧାରା ଉଛୁଳି ପଡେ, ସେଥିରେ ମୋର ପୌରୁଷ ଆହୁରି ତୃପ୍ତ ହୋଇ ଉଠୁଥିଲା । ଜୀବନରେ ଏଇ ଯେମିତି ମୋର ସର୍ବଶ୍ରେଷ୍ଠ କାମ୍ୟ, ଚରମ ପ୍ରାପ୍ତି ।

ସବୁ ପ୍ରାରମ୍ଭର ପରିସମାପ୍ତିପରି, ସବୁ ତୃପ୍ତି ଭିତରେ ଅତୃପ୍ତିର କ୍ଷୀଣ ବିନ୍ଦୁଟିଏ ଭଳି ଏ ପ୍ରାପ୍ତିର ବି ବିଷମୟ ପରିଣତଟିଏ ଯେ ମୋ ଭାଗ୍ୟ ନିୟନ୍ତ୍ରିତ କରୁଥିଲା, ଅଦୃଷ୍ଟରେ ମୋତେ ପରିହାସ କରୁଥିଲା, ସେ କଥା ଚିନ୍ତା କରିବା ପୂର୍ବରୁ ଅଘଟଣଟିଏ ଘଟିଥିଲା । ମୀନୁ ପୁଣି ମୋ ପାଇଁ ଦୂର ଆକାଶର ତାରା ହୋଇଗଲା ।

ଘଟଣାଟି ଥିଲା ଏମିତି । ସେତେବେଳକୁ ମେଟ୍ରିକ୍ ପରୀକ୍ଷା ଆଉ କିଛି ଦିନ ବାକିଥିଲା । ଖରାବେଳ, ଆଈ ଘରେ ନଥିଲା । ସଂଧ୍ୟାରେ ଫେରିବ କହି ସେ ତା' ବାପଘର ଆଡ଼େ ବୁଲି ଯାଇଥିଲା । ନିର୍ଦ୍ଧାରିତ ସମୟରେ ଆସିଲା ମୀନୁ । ସେଦିନ ପାଦ ଚିପି ଚିପି ଗଛମୂଳରୁ ଫେରିଯିବାର ଆବଶ୍ୟକତା ନଥିଲା । ଆଈ ଘରେ ନଥିବା ସମ୍ବାଦ ପାଇ ସେ ଆମ ଘର ଭିତରକୁ ପଶିଗଲା । ବାଁ ହାତରେ ଦୁଇଟା ପିଜୁଳି ଧରି ଡାହାଣ ହାତରେ ଆଉ ଗୋଟାଏ ପାଚିଲା ପିଜୁଳି କାମୁଡ଼ି କାମୁଡ଼ି ଲଥ୍ କରି ବସି ପଡିଲା ମୋ ଶୋଇବା ଘର ଖଟ ଉପରେ । ଆଖି ନଚେଇ ନଚେଇ ସେ ପିଜୁଳିରୁ କଳେ ଲେଖାଏଁ ଖାଇ ମୋ ସାଂଗରେ ଗପଯୋଡ଼ିଲା । ମୁଁ ତା'ର ଚନ୍ଦ୍ରମାନିନ୍ଦିତ ସୁନ୍ଦର ମୁହଁଟାକୁ ଏକ ଲୟରେ ଚାହିଁ ରହିଥିଲି । ସେ କ'ଣ ସବୁ କହିଯାଉଥିଲା, ମୋ କାନରେ କିଛି ପଶୁନଥିଲା । କେବଳ ଏତିକି ଅନୁଭବ କରୁଥିଲି, ଲାବଣ୍ୟମୟୀ ପ୍ରତିମାଟିଏ ମୋ ପୌରୁଷକୁ ଆହ୍ୱାନ ଦେଉଛି । ମୋତେ ହାତଠାରି ଡାକୁଛି, ଅପରୂପ ସୌନ୍ଦର୍ଯ୍ୟର ପସରାଟିଏ ବିଛାଡ଼ି ହୋଇ ପଡୁଛି, ତୋଳିନେଇ ତା'ର ହେପାଜତ୍ କରିବା ମୋ କାମ । ମୁଁ ନିଜକୁ ମୋ ନିୟନ୍ତ୍ରଣରେ ରଖିପାରିଲି ନାହିଁ । କାନ ଭାଁ ଭାଁ ହୋଇଗଲା । ମୋ ନିଜର ଫଁ ଫଁ ନିଶ୍ୱାସ ଭିତରେ ମୁଁ ହଜିଗଲି । ତା'ପରେ କ'ଣ କଲି ନକଲି ସେ ଖେୟାଲ ମୋର ନାହିଁ । କେବଳ ମୋ ଡାହାଣ କାନ୍ଧତଳେ ଭୀଷଣ ଯନ୍ତ୍ରଣା ଅନୁଭବ କରି ମୁଁ ସଚେତନ ହେବା ବେଳକୁ ମୀନୁ ଦୌଡି ପଳେଇଥିଲା । ଡାଳିମ୍ବ ମଞ୍ଜିଭଳି

ସୁନ୍ଦର ଦନ୍ତପଂକ୍ତି ଯିଏ ପିଜୁଳି ଉପରେ କସରତ କରୁ କରୁ ମୋ ପୌରୁଷକୁ ଉଦ୍ଦୀପିତ କରୁଥିଲା, ସେଇ ଗୁଡିକ ମୁହୂର୍ତ୍ତକ ପାଇଁ ହିଂସ୍ର ପାଲଟି ଯାଇଥିଲା ଓ ମୋ ଡାହାଣ କାନ୍ଧତଳେ ଶକ୍ତ ଦଂଶନ କରିଥିଲା ।

ମୀନୁ ଚୁପ୍ ରହିଥା'ନ୍ତା ହେଲେ..... ।

ସେ ଚୁପ୍ ରହିବା ଝିଅ ନଥିଲା । ଆଈ ଫେରି ଆସିବା ବେଳକୁ ଏ ଘଟଣା ଗାଁ ସାରା ରାଷ୍ଟ୍ର ହୋଇ ସାରିଥିଲା । ମୋ ଆଈ କାନରେ କଥା ପଡ଼ିଲା । ଆଈ ବାହୁନି ବାହୁନି କାନ୍ଦିଲା ଓ ମୁଁ ବାଲୁଙ୍ଗା କୁଳାଙ୍ଗାର, ବଂଶର ନାଁ ଗାଁ ପକେଇଲି ବୋଲି ମୁଣ୍ଡକୋଡି ହେଲା । କଥାଟା ସେତିକିରେ ସୀମିତ ରହିଲା ନାହିଁ । ହେଡ୍‌ମାଷ୍ଟ୍ରଙ୍କ ପର୍ଯ୍ୟନ୍ତ କଥା ଗଲା । ସେ ମତେ ଅଫିସ୍ ରୁମ୍‌କୁ ଡକେଇ ନେଲେ ଓ ମୋ ଗାଲରେ ଠାଏ ଠାଏ ଦୁଇଟା ବସେଇ ଏସବୁ ବାଲୁଙ୍ଗାମୀ ଛାଡ଼ି ପାଠ ପଢିବାକୁ ଉପଦେଶ ଦେଲେ । ମୀନୁ ଘର ଆଡୁ ମୋ ପ୍ରତି ବିପଦ ମାଡ଼ି ଆସୁଛି ଅନୁଭବ କରି ଦିନେ ଆଈ କହିଲା ମୁଁ ଏ କେଳଙ୍କାରୀକୁ ସମ୍ଭାଳି ପାରିବି ନାହିଁ, ଚାଲ ତୋ ବୋପା ମାଆ ପାଖରେ ଛାଡ଼ି ଆସିବି ତତେ ।

ଏମିତି କିଛି ପରିବର୍ତ୍ତନଟିଏ ବୋଧହୁଏ ମୋପାଇଁ ଆବଶ୍ୟକତା ଥିଲା । ମୁଁ ସଙ୍ଗେ ସଙ୍ଗେ ରାଜି ହେଇଗଲି, ତା'ପରଦିନ ଭଲ କରି ରାତି ନ ପାହୁଣୁ ଆଈ ଓ ମୁଁ ଆମ ଗାଁ ଅଭିମୁଖେ ବାହାରି ପଡ଼ିଲୁ । କିଛି ପାଦଚଲା ରାସ୍ତା, ନଈଟିଏ,ନଈରେ ଡଙ୍ଗା, ପୁଣି ବସ୍, ଏମିତି ହେଇ ଆମେ ପହଞ୍ଚିଲୁ ଠିକଣା ଜାଗାରେ । ସମ୍ବଲପୁର୍‌ରେ ଚାକିରି କରୁଥିବା ମୋ ବାପା ସେତେବେଳେ ଗାଁକୁ ଆସିଥିଲେ ଛୁଟିରେ । ମୋର ଅନ୍ୟ ଭାଇ ଭଉଣୀ ଗାଁରେ ପଢୁଥିଲେ ବି ସେ ମୋତେ ସାଙ୍ଗରେ ନେଇ ଯାଇଥିଲେ ସମ୍ବଲପୁର । ମୋ ପାଇଁ ଦୁଇଟା ଟିଉସନ୍ ଖଞ୍ଜି ଦେଇଥିଲେ । ଆଈଘର ଗାଁଠାରୁ ତିରିଶ କିଲୋମିଟର ଦୂରତ୍ୱରେ ପଡ଼ିଥିବା ପରୀକ୍ଷା ସେଣ୍ଟର୍‌କୁ ପରୀକ୍ଷା ଦେବାପାଇଁ ମୁଁ ଆସିଥିଲି । ବାପା ସାଙ୍ଗରେ ଆସିଥିଲେ । ଶୈଶବରୁ ମୋର କୌଣସି କ୍ରିୟାକଳାପରେ ହସ୍ତକ୍ଷେପ କରି ନଥିବା ବାପାଙ୍କର ସେତେବେଳର ସେ ବ୍ୟବସ୍ଥା ପ୍ରତି ମୁଁ ମନଭିତରେ ବିଦ୍ରୋହୀ ହୋଇ ଉଠୁଥିଲେ ବି ତାଙ୍କର ସେ ବିଜ୍ଞ ନିଷ୍ପତ୍ତି ମୋ ପାଇଁ ଏକ ଉଜ୍ଜ୍ୱଳ ଭବିଷ୍ୟତର ପ୍ରତିଶ୍ରୁତି ବହନ କରିଥିଲା ।

ଏ ପରିଣତ ବୟସରେ ମୁଁ ପୁଣିଥରେ ସ୍ୱୀକାର କରୁଛି, ସେଇ ମୀନୁକୁ ଧ୍ରୁବତାରା ରୂପେ ଗ୍ରହଣ କରି ଜୀବନକୁ ବିସ୍ତାରିତ କରିବାର ଯେଉଁ ମନ୍ତ୍ର ମୁଁ ଆୟତ୍ତ କରିଥିଲି ଆଉକେବେ ସେ ମନ୍ତ୍ରରୁ ବିଚ୍ୟୁତ ହୋଇନାହିଁ କି କକ୍ଷଚ୍ୟୁତ ହୋଇ ନାହିଁ । ସେଇ ପ୍ରେରଣା ମୟୀ ମୋ ସଂସାର ଭିତରକୁ ଆସିପାରିଲା ନାହିଁ ସିନା କିନ୍ତୁ ଜୀବନ ଜୀଇବାର ସବୁ କୌଶଳ ମୋ ପାଇଁ ସହଜ ହୋଇଗଲା । ଜୀବନରେ ଆଉ କେବେ କୌଣସି ନାରୀ ମତେ ପ୍ରଲୁବ୍ଧ କରିନାହିଁ କି ମୁଁ ଲକ୍ଷ୍ୟ ଭ୍ରଷ୍ଟ ହୋଇନାହିଁ ।

ସଫଳତା ମୋ ପଦଚୁମ୍ବନ କରିଛି । ସେଇ ସଫଳତାରୁ ମିଳିଛି ପ୍ରାଚୁର୍ଯ୍ୟ । ଘରେ ସୁନ୍ଦରୀ ସ୍ତ୍ରୀ, ମେଧା ସମ୍ପନ୍ନ ବାଧ୍ୟ ସନ୍ତାନ । ସମସ୍ତେ ସମାଜରେ ସୁପ୍ରତିଷ୍ଠିତ । ଚାକିରୀରେ ଅର୍ଥ କ୍ଷମତା ପ୍ରତିଷ୍ଠା ଓ ସମ୍ମାନ ସବୁ ମିଳିଛି । ଏସବୁର ମୂଳ ଉତ୍ସ ଯେ ମୀନୁ ଅନେକ ସମୟରେ ଏମିତି ଚେତନାଟିଏ ମୋତେ ଭାବାବେଶ କରିଛି । ସେ ସ୍ମୃତିକୁ ମୁଁ ସାଇତି ରଖିଛି । ବୁଢ଼ୀ ଅସୁରୁଣୀ ତା ଜୀବନ ନାଟିକାକୁ ସାତତାଳ ପାଣି ସାତତାଳ ପଙ୍କ, ତା ଭିତରେ ସିନ୍ଦୁକ,ସିନ୍ଦୁକ ଭିତରେ ଫରୁଆରେ ସାଇତି ରଖିଲାଭଳି । ଜୀବନରେ ଯେ ମୀନୁ ସହ ପୁଣି କେବେ ଦେଖା ହେବ ଏମିତି ଭାବନାଟିଏ ସ୍ୱପ୍ନରେ ସୁଦ୍ଧା ମୁଁ କରିନାହିଁ । ସେ କେବଳ ସ୍ମୃତିଟିଏ । ମଧୁର ଯନ୍ତ୍ରଣାଟିଏ । ଅଶିଣ ଆକାଶର କାଳିଜହ୍ନ ପରି । ଦୁର୍ବୋଧ୍ୟ ଭୟଙ୍କର ଅଥଚ କେତେ ମାଧୁର୍ଯ୍ୟମୟୀ ।

କଲେଜ ଜୀବନରେ ଅଭିମାନ, ଚାକିରିପରେ ସରକାରୀ କାର୍ଯ୍ୟବ୍ୟସ୍ତତା ଓ ପାରିବାରିକ ଜଂଞ୍ଜାଳ ଭିତରେ ବୁଡି ରହି ସେଇ କଲ୍ୟାଣୀର ଖବର ରଖିବା ମୋ ପାଇଁ ଅସମ୍ଭବ ହୋଇ ପଡିଥିଲା । ମୋ ବୋଉ ଆଈର ଏକମାତ୍ର ସନ୍ତାନ ହୋଇଥିବାରୁ ଆଈ ପରେ ଗାଁ ସହ ସଂପର୍କ ଛିନ୍ନ ହୋଇଗଲା । ବହୁଦିନ ତଳେ ଟୁଙ୍ଗା ସହ ଦେଖାହେଇଥିଲା, ସିଏ କହୁଥିଲା ମୀନୁ ଜଣେ ସରକାରୀ କଲେଜର ଅଧ୍ୟାପକକୁ ବିବାହ କରିଛି । ଆହୁରି ମଧ୍ୟ କହୁଥିଲା ତା ଦାମ୍ପତ୍ୟ ଜୀବନରେ ଗୁଡାଏ ଭୁଲ୍ ବୁଝାମଣା ରହିଛି । ଅଦେଖା ଦେବତା ପାଖରେ ମୀନୁର ସୁଖ ଦାମ୍ପତ୍ୟ ଜୀବନ କାମନା କରିଥିଲି ।

ଭଗବାନ ମୋର ଅନେକ କାମନା ପୂରଣ କରିଛନ୍ତି । କିନ୍ତୁ ଏଇ କାମନାଟିର ପରିପୂର୍ତ୍ତି ପାଇଁ ସେ ଯେ କାର୍ପଣ୍ୟ କରିଛନ୍ତି, ମୀନୁକୁ ଦେଖିଲା ପରେ ସେ କଥା ମୋର ହୃଦ୍‌ବୋଧ ହୋଇଥିଲା ।

ଜୀବନର ଅନେକ ନିଃସଙ୍ଗ ମୁହୂର୍ତ୍ତ ଯାହାର ସ୍ମୃତି ରୋମନ୍ଥନରେ ଚଳ ଚଞ୍ଚଳ ହୋଇ ଉଠୁଥିଲା, ଚିର ସବୁଜ ବିନ୍ଦୁଟିଏ ହୋଇ ମୋ ବ୍ୟକ୍ତି ସତ୍ତାକୁ ଯିଏ ସମ୍ମୋହିତ କରି ରଖିଥିଲା ତାକୁ ଏମିତି ଏ ପରିସ୍ଥିତିରେ ଭେଟିବି ବୋଲି ମୁଁ ଆଦୌ କଳ୍ପନା କରିନଥିଲି । ସେଇ ସୁନା ଖଡିକା ଦେହ, ଧାରୁଆ ନାକ, ବାଁପଟ ଗାଲର ଟିକେ ତଳକୁ ପାଚିଲା କଣ୍ଟେଇକୋଳିପରି ଜାଇଟିଏ । ବାସ୍-ମୀନୁକୁ ଚିହ୍ନିବା ପାଇଁ ଆଉ କିଛି ସଂକେତର ଆବଶ୍ୟକତା ନଥିଲା ।

ମୁଁ ଆସିଥିଲି ଗୋଟିଏ ଛାତ୍ରୀ ଧର୍ଷଣ ମାମଲାର ତଦନ୍ତ ପାଇଁ । ସରକାରୀ କଲେଜର ଜଣେ ପ୍ରତିଷ୍ଠିତ ଅଧ୍ୟାପକ ଗୋଟିଏ ଛାତ୍ରୀର ଆତ୍ମହତ୍ୟା ମାମଲାରେ ସନ୍ଦେହ ଘେରରେ ଥିଲେ । ଶିକ୍ଷା ବିଭାଗର ଉଚ୍ଚପଦସ୍ଥ ଅଫିସର ହେତୁ ସରକାର ଏ ତଦନ୍ତ ଭାର ମୋତେ ଦେଇଥିଲେ । ମୋର ତଦନ୍ତ ରିପୋର୍ଟ ଉପରେ ଅଧ୍ୟାପକଙ୍କ ଭାଗ୍ୟ ନିର୍ଭର କରୁଥିଲା । ଆଉ ତଦନ୍ତ ନିର୍ଭର କରୁଥିଲା ଅଧ୍ୟାପକଙ୍କ ପତ୍ନୀଙ୍କ ବୟାନ ଉପରେ ।

ଏଇଭଳି ଗୋଟିଏ ଦାୟିତ୍ୱ ସଂପନ୍ନ କାର୍ଯ୍ୟ ସଂପାଦନା ବେଳେ ମୀନକୁ ତଦନ୍ତ ପରିସର ଭିତରେ ଦେଖି ହତଚକିତ ହେବା ମୋପାଇଁ ସ୍ୱାଭାବିକ ଥିଲା । ଚାକିରୀକାଳ ଭିତରେ ଜଣେ ସାଧୁ ସଚ୍ଚୋଟ ଅଧିକାରୀ ଭାବରେ ମୁଁ ଯେଉଁ ନିର୍ମଳ ଭାବମୂର୍ତ୍ତି ଏ ଯାବତ୍ ଅକ୍ଷୁଣ୍ଣ କରି ରଖିଥିଲି ଇଯେ ଥିଲା ତା ପାଇଁ ଏକ କଠିନ ପରୀକ୍ଷାର ମୁହୂର୍ତ୍ତ । ଏ ପରୀକ୍ଷା ପାଇଁ ମୋ ପୌରୁଷ, ମୋ ସମର୍ଥପଣ ସହାୟତା ହେବ କି ମୋତେ ଅସହାୟ କରିବ ଏକଥା ଚିନ୍ତା କରୁ କରୁ ମୀନୁ ସୋଫା ଉପରୁ ଉଠିପଡି ମୋତେ ନମସ୍କାର କଲା ଓ ମୋ ମୁହଁକୁ ଏମିତି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ଯେ ମୁଁ ଆତଙ୍କ ଗଣିଲି ।

ସତ୍ୟାନାଶ୍ । ମୀନୁ ମତେ ଚିହ୍ନି ପାରିଛି ।

ମୋ ଭାବାବେଗକୁ ଦମନ କରି ମୁଁ ପୁରାପୁରି ନିସ୍ପୃହ କଣ୍ଠରେ ତାର ପରିଚୟ ମାଗିଲି ।

ସେ କହିଲା- ମୁଁ ପ୍ରଫେସର ଅବିନାଶ ଚୌଧୁରୀଙ୍କ ସ୍ତ୍ରୀ । ମୀନୁଶ୍ରୀ ଚୌଧୁରୀ ।

ମୋ ନାମ ପରିଚୟ ତା ପାଖରୁ ଜାଣି ଶୁଣି ଗୋପନ ରଖି ସହଜ କଣ୍ଠରେ କହିଲି । ମୁଁ ଉଚ୍ଚଶିକ୍ଷା ନିର୍ଦ୍ଦେଶକ । ମିଃ ଚୌଧୁରୀଙ୍କ ବିରୁଦ୍ଧରେ ଥିବା ଅଭିଯୋଗର ତଦନ୍ତ ସଂପର୍କୀୟ କିଛି ସହାୟତା ମୁଁ ଆପଣଙ୍କ ପାଖରୁ ଚାହୁଁଛି । ମୀନୁ ନିଷ୍କମ୍ପ କଣ୍ଠରେ କହିଲା-

"ହଁ ନିଶ୍ଚୟ, କୁହନ୍ତୁ ।"

ମୁଁ ମୀନୁକୁ ପଚାରିଥିବା ପ୍ରଶ୍ନ ଓ ସେ ଦେଇଥିବା ଉତ୍ତର ଗୁଡ଼ିକର ନିଷ୍କର୍ଷ ମୀନୁର ଯନ୍ତ୍ରଣା ଜର୍ଜରିତ ପଚିଶି ବର୍ଷର ଦାମ୍ପତ୍ୟ ଜୀବନକୁ ଇଙ୍ଗିତ କରୁଥିଲା । ଦୀର୍ଘ ପଚିଶିବର୍ଷ ହେଲା ସେ ଯେଉଁ ନିଆଁକୁ ଅଣ୍ଟିରେ ଧରିରଖିଥିଲା ତାରି ଫଳ ସ୍ୱରୂପ ଆଜି ନିରୀହ ଛାତ୍ରୀର ଜୀବନ ଗଲା ବୋଲି ବାରମ୍ବାର ସେ ମୋତେ କହୁଥିଲା । ପ୍ରାକ୍ଟିକାଲ୍‌ରେ ଭଲନମ୍ବର ଦେବା, ରିସର୍ଚ୍ଚ ପ୍ରୋଜେକ୍ଟ ଦେବା, ମାଗାଜିନ୍‌ରେ ଲେଖା ପ୍ରକାଶ କରିବା ପ୍ରଥମ ଦଶଜଣକ ଭିତରେ ସ୍ଥାନ ଦେବା, ଏମିତି କେତେକ'ଣ ପ୍ରଲୋଭନ ଦେଖାଇ ମିଃ ଚୌଧୁରୀ ଛାତ୍ରୀମାନଙ୍କୁ ଆକର୍ଷିତ କରନ୍ତି । ମୀନୁ ପ୍ରତିବାଦ କଲେ ସେହି ଛାତ୍ରୀମାନଙ୍କ ସମ୍ମୁଖରେ ହିଁ ତାକୁ ମାଡଗାଳି ସହିବାକୁ ପଡେ । ବିଭିନ୍ନ ଆଳଦେଖାଇ ମିଃ ଚୌଧୁରୀ ପତ୍ନୀକୁ ବାପଘରକୁ ପଠେଇ ଦିଅନ୍ତି । ଏଇଠି ଏଇଘରେ ହିଁ ତାଙ୍କର ପାଶବିକ କାମନାର ଶିକାର ହୁଅନ୍ତି ନିରୀହ ଝିଅ ଗୁଡ଼ାକ । କେତେଟା ଉଦଣ୍ଡୀ ସୁବିଧା ବାଦୀ ଝିଅ ତାଙ୍କର ଏ ପ୍ରବୃତ୍ତିରୁ ଫାଇଦା ଉଠାଇଥାନ୍ତି ତ ଆଉ କେତେକ ସାମାଜିକ ଲଜ୍ଜା ଅପମାନ ଭୟରେ ଓ ପରୀକ୍ଷାରେ ଫେଲ୍ ହେଇଯିବା ଆଶଙ୍କାରେ ଚୁପ୍ ରହନ୍ତି ।

ଶେଷ ଘଟଣାଟିରେ ମିସେସ୍ ଚୌଧୁରୀ ପ୍ରତ୍ୟକ୍ଷଦର୍ଶୀ । କୌଣସି କାରଣ ପାଇଁ ଗାଁକୁ ଯାଇଥିବା ମୀନୁ ନିର୍ଦ୍ଧାରିତ ସମୟ ପୂର୍ବରୁ ଫେରି ଆସିଥିଲା । ମିଃ ଚୌଧୁରୀ

ସରକାରୀ ବାସ ଭବନରେ ଏକାକୀ ଥିଲେ । ବାରମ୍ବାର କଲିଂବେଲ ଟିପିବା ସତ୍ତ୍ୱେ ମିଃ ଚୌଧୁରୀ ଦରଜା ଖୋଲି ନ ଥିଲେ । ଭିତରୁ ନାରୀକଣ୍ଠର ଅସ୍ପଷ୍ଟ ଚିତ୍କାର ଶୁଣିପାରୁଥିଲା ମୀନୁ । ମୀନୁର ବାରମ୍ବାର କରାଘାତହେତୁ କବାଟ ଖୋଲୁ ଖୋଲୁ ବ୍ୟସ୍ତ ବିବ୍ରତ ଓ ଅସଂଯତ ବେଶଭୂଷାରେ ଝିଅଟିଏ କାନ୍ଦି କାନ୍ଦି ମିଃ ଚୌଧୁରୀଙ୍କୁ ଠେଲି ଧାଇଁ ଚାଲି ଯାଇଥିଲା । ରାତି ପାହିଲାବେଳକୁ ସେଇ ହତଭାଗିନୀଟିର ଆତ୍ମହତ୍ୟା ଖବର ଚାରିଆଡେ ବ୍ୟାପୀ ଯାଇଥିଲା ।

ମୀନୁ ପାଖରୁ ବୟାନ ରେକର୍ଡ କରି ମୁଁ ଫେରି ଆସିଲି । ମୀନୁ ମତେ ସତକୁ ସତ ଚିହ୍ନିପାରିଲା ନାହିଁ କି ଚିହ୍ନି ଅଚିହ୍ନା ହେଲା ଏଇ ଅସମାହିତ ପ୍ରଶ୍ନର ସମାଧାନ କରୁ କରୁ ମୁଁ ଘରେ ପହଞ୍ଚିସାରିଥିଲି । ଅହରହ ମୀନୁର ସୁଖି ଦାମ୍ପତ୍ୟ କାମନା କରି ଆସୁଥିବା ସଚ୍ଚୋଟ ପ୍ରେମିକର ଆତ୍ମସତ୍ତାଟିଏ ମୋ ନୀତି, ଆଦର୍ଶ, ସଂସ୍କାର ଓ ନିର୍ମଳ ଭାବମୂର୍ତ୍ତିକୁ ଆହ୍ୱାନ କରୁଥିଲା ।

ଜୀବନସାରା ମୀନୁର ସ୍ମୃତି ମୋତେ ସଫଳତାର ସୋପାନ ଆଡକୁ ଆକର୍ଷିତ କରିଥିଲା, ମୋ ନିର୍ବୋଧ ଚପଳ ଶୈଶବ ତା ପ୍ରେମର ମୂର୍ଚ୍ଛନାରେ ମଧୁମନ୍ଦ୍ରିତ ହେବା ସଙ୍ଗେ ସଙ୍ଗେ ପ୍ରଜ୍ଞାମୁଖୀ ହୋଇଥିଲା । ମୋ ଉଦ୍ଦାମ ଯୌବନ ମୀନୁର ହୃଦୟ ବିଦାରକ ସ୍ମୃତିରେ ଶୃଙ୍ଖଳିତ ହୋଇଥିଲା । ସେଇଭିତ୍ତି ପ୍ରସ୍ତରରେ ମୁଁ ମୋର ବ୍ୟକ୍ତିତ୍ୱର ସୌଧ ଅନାୟାସରେ ଗଢିପାରିଥିଲି । ମୁଁ ସହସ୍ରବାର ସ୍ୱୀକାର କରୁଛି । ମୋ ସାଫଲ୍ୟ ମଣ୍ଡିତ ଓ ସଂଯମପିଣ୍ଡିତ ବ୍ୟକ୍ତିସତ୍ତାର ବିକାଶ ପାଇଁ ମୋ ଜୀବନ ଆକାଶରେ ସେ ଧ୍ରୁବତାରର ଭୂମିକା ନିଭାଇଛି । ଆଉ ଆଜି ଯେତେବେଳେ ଚିତ୍ତଦୌର୍ବଲ୍ୟ ମୋ କର୍ତ୍ତବ୍ୟ ନିଷ୍ଠାକୁ ଫୁତ୍କାର କରୁଛି, ମୋ ଦାୟିତ୍ୱ ବୋଧ ପ୍ରତି ଭ୍ରୁକୁଞ୍ଚିତ କରୁଛି, ମୁଁ ଦିଗହରା ହେବି କେମିତି ?

ସ୍ୱାମୀ ଅବିନାଶ ଚୌଧୁରୀଙ୍କ ଅପକୀର୍ତ୍ତି ସଂପର୍କରେ ମୀନରୁ ନିଷ୍କମ୍ପ ବୟାନ କ୍ରମଶଃ ଦିଗଭ୍ରଷ୍ଟ ହୋଇ ଆସୁଥିବା ମୋ ସ୍ନାୟୁର ସହରରେ ଦିଗବାରେଣୀ ଶଙ୍କୁଟିଏ ପାଲଟିଗଲା, ମୋ ଅବ୍ୟବସ୍ଥିତ ହୃଦୟ ଓ ବିଭ୍ରାନ୍ତ ମସ୍ତିଷ୍କଭିତରେ ସୃଷ୍ଟି ହୋଇଥିବା ସଂଘର୍ଷରୁ ମୁଁ ସ୍ଥିର ବିନ୍ଦୁଟିର ସନ୍ଧାନ ପାଇଗଲି । ପୁଣିଥରେ ମୀନୁ ପ୍ରେରଣାମୟୀ କଲ୍ୟାଣୀ ରୂପରେ ମୋ ଆଗରେ ଉଦ୍‌ଭାସିତ ହୋଇ ଉଠିଲା- ମୁଁ ମନେ ମନେ ଆବୃତ୍ତି କଲି-

ଯା ଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା

ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।



# ସ୍ୱପ୍ନ ବୃତ୍ତାନ୍ତ

ନିଦ୍ରାର ଆବେଶ ଅନେକବେଳୁ କଟିଯାଇଥିଲା ଗୌତମର । ବିଛଣାରୁ ଉଠି ଟେବୁଲ୍ ଉପରୁ ପାଣି ଗିଲାସେ ବି ସେ ଢକ୍‌ଢକ୍ କରି ପିଇସାରିଥିଲା । ତଥାପି ତାକୁ ଭାବାଚ୍ଛନ୍ନ କରି ରଖିଥିଲା ସ୍ୱପ୍ନଟା ଗୋଟାଏ ଆହେତୁକ ଭୟ ତା' ଚେତନାକୁ କାବୁ କରିନେଇଥିଲା ସେତେବେଳକୁ । ବ୍ୟସ୍ତବିବ୍ରତ ହୋଇ ସେ ସ୍ୱଗତୋକ୍ତି କରୁଥିଲା- ଏଡ଼େ ବୋକୀ ଝିଅଟା । ପିତଳ ଗୋବବସା ହାତୀ ଭଳି କବାଟ । ଭିତରୁ ବନ୍ଦ କରିଦେଲେ ତାକୁ ଭାଙ୍ଗି ଭିତରେ ପଶିବା ଏତେ ସହଜ ନୁହେଁ । ଡରକୁଳି ଝିଅଟା ଜୀବନ ବିକଳରେ ଭିତରକୁ ଚାଲିଗଲା ହେଲେ ଦରଜାଟା ବନ୍ଦ କରିବାକୁ ଭୁଲିଗଲା କେମିତି ଯେ ? ଦୁର୍ବୃତ୍ତ ଜଣକ ତ ପ୍ରାୟ ପାଖାପାଖି ହୋଇଆସିଥିଲା । ଆଉ କେଇଗଜର ରାସ୍ତା ଥିଲା ମାତ୍ର । ଯଦି ତା' ଆଖିରେ ସେଇ ଜରାଜୀର୍ଣ୍ଣ ପ୍ରାସାଦଟା ପଡ଼େ ସେ ନିଶ୍ଚୟ ତା'ପଛରେ ଆସୁଥିବା ଦୁର୍ଦ୍ଦାନ୍ତ ଲୋକଗୁଡ଼ାଙ୍କୁ ସନ୍ଦେଶ ଦେଇଦବ । ନିଘଞ୍ଚ ଜନମାନବଶୂନ୍ୟ ଜଙ୍ଗଲରେ କିଏ ବା ତାର ସାହାଭରସା ହେବ ? ଅଣନିଶ୍ୱାସୀ ହୋଇ ଜନବସତି ଆଡ଼କୁ ଧାଇଁଲା ଗୌତମ । କିନ୍ତୁ ସେମାନେ ତାକୁ ଅକ୍ତିଆର କରିସାରିଥିଲେ । ଚକ୍‌ଚକ୍ କରୁଥିବା ଛୁରୀଟିରେ ତା' ତଳିପେଟକୁ ଭୁଷିଲାବେଳକୁ ନିଦ ଭାଂଗି ଯାଇଥିଲା ଗୌତମର । ନିଦଟା ସିନା ଭାଂଗିଗଲା କିନ୍ତୁ ସ୍ୱପ୍ନର ସମ୍ମୋହନୀ ପ୍ରଭାବରୁ ସେ ନିଜକୁ ମୁକ୍ତ କରିପାରି ନଥିଲା । ଭୟ ଓ ଉଦ୍‌ବେଗରେ ସେ ଥରିବାକୁ ଲାଗିଲା । ଗୁଣୁଗୁଣୁ ହେଇ କହିଲା-

ହେ ଭଗବାନ୍, ଝିଅଟାକୁ ଟିକେ ବୁଦ୍ଧି ଦିଅ । ସେ ସଦର ଦରଜାଟା ବନ୍ଦ କରିଦେଉ । ତାକୁ ଟିକେ ଶକ୍ତି ଦିଅ ସେ ଏଇ ଦୁର୍ଦ୍ଦାନ୍ତ ଲୋକମାନଙ୍କୁ ସାହସର ସହ ମୁକାବିଲା କରୁ ।

ଗୌତମ ଦେହରୁ ଗମ୍‌ଗମ୍ ହୋଇ ଝାଳ ନିଗିଡ଼ି ଯାଉଥିଲା, ଦେହର କମ୍ପନଟା ବି ବନ୍ଦ ହେଇ ନଥିଲା ଏପର୍ଯ୍ୟନ୍ତ ।

ପାଖରେ ନିଶ୍ଚିନ୍ତରେ ନିଦ୍ରା ଯାଇଥିବା ସୁନୟନାକୁ ସେ ଚାହିଁଲା । ଇଏ ବି କୋଉ କମ୍ କି ? ଅନ୍ୟ ସମୟରେ ବେଶ୍ ବୁଦ୍ଧିମତୀ ଭଳି ଜଣାପଡୁଥିଲେ ବି ବିପଦବେଳେ ତା'ମୁଣ୍ଡକୁ କିଛି ବୁଦ୍ଧି ଜୁଟେ ନାହିଁ । ପୂରାପୂରି ନର୍ଭସ ହୋଇପଡ଼େ । ବିଚାରବୁଦ୍ଧି ସବୁ ପୋଡ଼ି ଖାଇଦିଏ ।

ଭୟରେ ଚିତ୍କାର କରିବା ଛଡ଼ା ସେ ଆଉ କିଛି ଜାଣେ ନାହିଁ । ଗୌତମ କହେ "ଏତେ ସରଳ ଓ ଦୁର୍ବଳ ହେଲେ ତମେ ସଂସାର କେମିତି ସମ୍ଭାଳିବ ସୁନି ? ଏ ସମାଜରେ ବହୁତ ଖଳ ଲୋକ ଅଛନ୍ତି । ସେମାନଙ୍କଠାରୁ ଆତ୍ମରକ୍ଷା କରିବାର କୌଶଳ ଶିଖ ।"

ସୁନୟନା ସେମିତି ନିଷ୍କପଟ ହସଟିଏ ହସି କହେ-

"କାଇଁ ? ମୁଁ ତ ସେମିତି ଖଳମଣିଷର ଗନ୍ଧ ଏପର୍ଯ୍ୟନ୍ତ ପାଇନି ।  ସଂସାରର ସବୁ ଭଲ ମଣିଷମାନଙ୍କୁ ବାଛିବାଛି ଈଶ୍ୱର ମୋ ଚାରିପଟରେ ଖଞ୍ଜି ଦେଇଛନ୍ତି ।"

ଆଉଟିକେ ରସିକତା କରି ଆଖି ନଚେଇ ଓଠ ବଂକେଇ ସେ କହେ: "ଯେମିତି ତମେ । ତମେ ଯଦି ଏତେ ଭଲ ହେଇ ନଥାନ୍ତ ମୋ ସଂସାର କିଏ ସମ୍ଭାଳିଥାନ୍ତା କହିଲ ?"

ସୁନୟନାର ଶେଷକଥା ପଦକରେ ଗୌତମର ଅନ୍ତରଟା ଉଲ୍ଲସି ଉଠେ । କିନ୍ତୁ ଏ ଉଲ୍ଲାସ ଭାବ ସୁନୟନା ପାଖରୁ ଗୋପନ ରଖି କୃତ୍ରିମ ଗାମ୍ଭୀର୍ଯ୍ୟରେ ମୁହଁ ଭାରି କରିଦିଏ ।

ସୁନୟନାକୁ ଦାୟିତ୍ୱଶୀଳା ହେବା ପାଇଁ ପଡ଼ିବ । କିଏ ଜାଣେ କେତେବେଳେ କେଉଁକଥା । ଦୁନିଆକୁ ବୁଝିବା ପାଇଁ ଅଭିଜ୍ଞତା ଦରକାର ।

ଏ ସବୁଥିରେ ସୁନୟନା ଏକଦମ୍ କଞ୍ଚା ।

ମଶାରୀ ପଡ଼ିଥିବା ସତ୍ତ୍ୱେ ସୁନୟନାର ମାର୍ବଲ ପଥର ପରି ଚିକ୍କଣ ଗାଲ ଉପରେ ମଶାଟିଏ ନିର୍ଭୟରେ ରକ୍ତ ଶୋଷି ଚାଲିଥାଏ । ବାଁ ହାତରେ ସରୁ ଚାପଡ଼ାଟିଏ ଦେଲା ଗୌତମ ।

ମେଞ୍ଚାଏ ରକ୍ତ ଲେସି ହେଇଗଲା ସୁନୟନାର ଗାଲ ଓ ଗୌତମର ପାପୁଲିରେ । ସୁନୟନାର ନିଦ ଭାଙ୍ଗିଗଲା । ଆଖି ଖୋଲି ନିଦ ମଳମଳ କଣ୍ଠରେ କହିଲା-

ଏ ପର୍ଯ୍ୟନ୍ତ ଶୋଇନ ତମେ ! କଫ ଜମିଛି କି ?

ଇନ୍‌ହେଲର୍ ଟିକେ ନେଇଯାଉନ ?

ଗମ୍ଭୀର ହୋଇ ଗୌତମ କହିଲା ।

ନାଇଁ ମୁଁ ଠିକ୍ ଅଛି । ଦୁଃସ୍ୱପ୍ନଟିଏ ଦେଖିଲି ତ ନିଦଟା ଭାଙ୍ଗିଗଲା, ସୁନୟନା ଉଠି ବସିଲା ।

ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଭଳି ସୁନୟନା ଆଗରେ ସ୍ୱପ୍ନବୃତ୍ତାନ୍ତ ବୟାନ କଲା ଗୌତମ ।

ସୁନୟନା ଅନୁଭବ କଲା ଗୌତମ ଭୟାର୍ତ୍ତ ।

ସେ ତାକୁ ଆଶ୍ୱାସନା ଦେଇ କହିଲା- "ମୋର ଟ୍ରାନ୍‌ସଫର ହେଲାଦିନୁ ତମେ ମୋ ନିରାପତ୍ତା ନେଇ ଗୁଡ଼ାଏ ଭାବୁଛ ତ ତାର ପରିଣତି ସବୁ ଇୟେ ! କେତେଥର

କହିଲିଣି ମୋ ପାଇଁ ତମେ  ଏତେ ଟେନ୍‌ସନ୍ ନିଅ ନାହିଁ । ମୁଁ କ'ଣ ଛୋଟ ପିଲା ହୋଇଛି ଯେ ମତେ ଏସ୍କର୍ଟଟିଏ ଦରକାର ? ମୋ ଆତ୍ମରକ୍ଷା ପାଇଁ ଅନ୍ୟର ସହାୟତା ନେବି ? ଝିଅମାନେ ଏଭରେଷ୍ଟ ଛୁଇଁଲେଣି, ମଂଗଳ ଗ୍ରହକୁ ଯିବା ପାଇଁ ସଜ ହେଲେଣି । ତଥାପି ତମେ ସେଇ ପୁରୁଣା ଚିନ୍ତାଧାରାରୁ ମୁକ୍ତ ହେଇପାରୁନ ।" ଗୌତମ କିଛି କହିଲା ନାହିଁ । କହିବାକୁ ଇଚ୍ଛା କଲା ନାହିଁ ।

ଗୌତମ ମନରୁ ଭୟର ଭୁତଟା ସହଜରେ ଛାଡ଼େ ନାହିଁ । ସୁନୟନା ଘରକୁ ନ ଫେରିବା ପର୍ଯ୍ୟନ୍ତ ସେ ଆଶଙ୍କା ବିଜଡ଼ିତ ହୋଇ ରହେ । ପ୍ରତିଦିନ ଷାଠିଏ ସତୁରୀ କି.ମି. ତାକୁ ଯିବାକୁ ହୁଏ । ଷ୍ଟପେଜ୍‌ରେ ଓହ୍ଲେଇ ପୁଣି ଦୁଇ କି.ମି. ଭିତରକୁ । ସେ ଆଇ.ସି.ଡି.ଏସ୍.ରେ କାମ କରେ  । ପ୍ରତିଦିନ ବସ୍‌ର କ୍ଳାନ୍ତିକର ଯାତ୍ରା । ଅଫିସ୍ ଫେରନ୍ତା ସୁନୟନାର କ୍ଳାନ୍ତ ଅବୟବ ଦେଖିଲେ ବ୍ୟସ୍ତ ହେଇପଡେ ଗୌତମ । ବି.ଡି.ଓ ପାଖରୁ ଆରମ୍ଭ କରି କଲେକ୍ଟର ଓ ବିଭାଗୀୟ ମନ୍ତ୍ରୀ ପର୍ଯ୍ୟନ୍ତ, ବଦଳି ପାଇଁ ସମସ୍ତଙ୍କୁ ଗୁହାରୀ କରିକରି ସେ ନୟାନ୍ତ ହେଲାଣି । କୌଣସି ସୁଫଳ ମିଳି ନାହିଁ ।

ସୁନୟନା ସକାଳର କାମସାରି ପିଲାମାନଙ୍କୁ ସ୍କୁଲ ପଠାଇବା ବ୍ୟବସ୍ଥା କରିସାରିଲାଣି । ଗୌତମ ପାଇଁ ପରଟା ଓ ଆଳୁଭଜା ଡବାରେ ସଜାଡ଼ି ରଖି ନିଜେ ଗିନାଟିରେ ଭାତ ଡାଲି ଓ ତରକାରୀ ଢାଳି ତରତରରେ ଦୁଇଗୁଣ୍ଡା ଗିଳି ପକାଇଲା ।

ଚପଲ ଦୁଇଟା ଗୋଡ଼ରେ ଗଳଉ ଗଳଉ ଦାଢ଼ି କାଟୁଥିବା ଗୌତମ ଉଦ୍ଦେଶ୍ୟରେ ସେ କହିଲା ।

ତମ ଟିଫିନ୍ ସଜାଡ଼ି ଦେଇଛି ।

ତମ ପାଇଁ ହଟ୍ କେସ୍‌ରେ ଭାତ ବାଢ଼ି ରଖିଦେଇଛି । ଖାଇ ନବ ।

ସୁନୟନା ଚାଲିଗଲା ପରେ ଗୌତମକୁ ଆହୁରି ଖାଁ ଖାଁ ଲାଗିଲା । ରାତ୍ରିର ଭାବାଚ୍ଛନ୍ନତା ଏ ପର୍ଯ୍ୟନ୍ତ ସୁଦ୍ଧା କଟି ନାହିଁ । ପୁରାପୁରି ଗୁମ୍‌ସୁମ୍ ହୋଇ ରହିଲା ସେ ଦିନସାରା ।

ଅଫିସ୍ ଗଲା । ନିଜ ସିଟ୍‌ରେ ବସିଲା । ଟେବୁଲ୍ ଉପରେ ଗଦାଗଦା ଫାଇଲ୍ ପଡ଼ିଥିଲେ ବି ଗୋଟାଏ ଫାଇଲ୍ ଉପରେ ମୁହଁମାଡ଼ି ରହିଲା । ସେଇଟା ବି ସଂପୂର୍ଣ୍ଣ ହେଲା  ନାହିଁ ।

ପିଅନକୁ ଚା' ପାଇଁ ବରାଦ ଦେଲା । ଥଣ୍ଡା ଚା' ଦେଇଥିବାରୁ ତା' ଉପରେ ଗରଗର ହେଲା ।

ସୁନୟନା ଦେଇଥିବା ଟିଫିନ୍ ବାକ୍ସ ଖୋଲିଲା ନାହିଁ ।

କଫି ପିଇବାକୁ ଯାଇ ଘଣ୍ଟାଏକାଳ କ୍ୟାଣ୍ଟିନ୍ ବାହାରେ ପଡ଼ିଥିବା ବେଞ୍ଚ ଉପରେ ବସି ରହିଲା । କଫି ଅର୍ଡ଼ର ଦେବା ପାଇଁ ଭୁଲିଗଲା ଓ ଖୁବ୍ ସିଗାରେଟ୍ ପିଇଲା । ଉଦ୍ଦେଶ୍ୟହୀନ ଭାବରେ ଶୂନ୍ୟ ଆକାଶକୁ ଚାହିଁ ରହିଲା ଅନେକ ସମୟ ପର୍ଯ୍ୟନ୍ତ ।

ଟାଇପିଷ୍ଟ ସ୍ୱସ୍ତି ପଟ୍ଟନାୟକର ଲିପଷ୍ଟିକ୍ ବୋଳା ଓଠରେ 'ମର୍ଣ୍ଣିଂ ସାର୍' ସମ୍ବୋଧନକୁ ବି ନିର୍ବିକାର ଭାବରେ ଏଡ଼େଇ ଦେଲା ।

ଘରକୁ ଫେରିଲାବେଳକୁ ପିଲାମାନେ ସ୍କୁଲ୍‌ରୁ ଫେରିଲେଣି । ଚାକରାଣୀ ବାସନ ମାଜୁଛି । କିଛି ସମୟ ପରେ ଗୌତମ ପାଇଁ ସେ ଚା' ତିଆରି କରି ଆଣିଲା । ଚା'ରେ ଅଧିକ ଚିନି ପଡ଼ିଛି ବୋଲି ସେ ଇଷତ୍ ବିରକ୍ତ ହେଲା ଓ ମାଆ ଆସିଲେଣିକି ବୋଲି ପଚାରିଲା । ଯଦିଓ ସୁନୟନାର ଆସିବାବେଳ ହୋଇ ନଥିଲା, ତଥାପି ତାକୁ ଲାଗୁଥିଲା ସୁନୟନାର ଯଥେଷ୍ଟ ଆଗରୁ ଆସିବାର ଥିଲା ।

ବସ୍‌ଗୁଡ଼ାକର ବି ସମୟଜ୍ଞାନ ରହୁନାହିଁ ଆଜିକାଲି । ତାଙ୍କର ବେପାର ଭଲ ତ ସେ ଭଲ । ଲୋକଙ୍କର ସୁବିଧା ଅସୁବିଧାରେ ସେମାନଙ୍କର ଯାଏ ଆସେ କେତେ ?

ଚାକରାଣୀ କହିଲା: ମାଆଙ୍କର ଆସିବାବେଳ ହୋଇନାହିଁ ବାବୁ । ମନ୍ଦିରର ସଂଜଘଣ୍ଟା ବାଜିନି । ମାଆ କେମିତି ଆସିବେ ?

ମଂଗଳା ମନ୍ଦିରର ଘଣ୍ଟଆଳତୀ ଶୁଭିଲା । ଗୌତମ କାନେଇଲା । ଏଥର ସୁନୟନା ଆସିଯିବ । କଅଁଳା ବାଛୁରୀ ଛାଡ଼ି ଯାଇଥିବା ଗୋଠବାହୁଡ଼ା ଗାଈପରିକା ଅଣନିଃଶ୍ୱାସୀ ହୋଇ ଆସିବ । ଘରେ ଗୋଡ଼ ଦେଉ ନ ଦେଉ ସେ ରୋଷେଇ ଘରେ ପଶି ଗୌତମ ପାଇଁ ଚା' ଜଳଖିଆ କରିବ ।ଗୌତମ ନିଜକୁ ଭାରି ସ୍ୱାର୍ଥପର ଅନୁଭବ କଲା । ସୁନୟନାକୁ ସେ ଅବହେଳା କରୁଛି । ବହୁତ ପରିଶ୍ରମ କରୁଚି ବିଚରା । କିଛି ସହୃଦୟତା କିଛି ସମବେଦନା ତାର ଦରକାର । ଖାଲି କଥାରେ ନୁହେଁ କାମରେ ।

ମନ୍ଦିରର ସଞ୍ଜ ଆଳତୀ ସରିଲାଣି କେତେବେଳୁ । ସୁନୟନା ଏଥର ଆସିବ । ସେ କାନ ଡ଼େରିଲା । ପାଦଶବ୍ଦ ଶୁଭିଲାପରି ଲାଗିଲା ।

କ୍ଷୀରବାଲା । ଚାକରାଣୀ କ୍ଷୀର ରଖିଲା ।

ସୁନୟନା ପାଇଁ ହାତରେ ଜଳଖିଆ କରି ତାକୁ ସର୍ପ୍ରାଇଜ୍‌ଟିଏ ଦେବାପାଇଁ ଚାହିଁଲା ଗୌତମ । ରୋଷେଇ ଘରକୁ ଗଲା । ଦୁଇଟି. ଅଣ୍ଡା ଆମ୍‌ଲେଟ୍ କରି ପ୍ଲେଟ୍ ଉପରେ ଘୋଡ଼େଇ ରଖିଲା । ଦୁଇକପ୍ କଫି କରିବ ବୋଲି ଭାବିଲା । କଫି ଘାଣ୍ଟୁ ଘାଣ୍ଟୁ ସେ ନିଶ୍ଚୟ ଆସି ପହଞ୍ଚିଯିବ ବୋଲି ହିସାବ କଲା ।

ସୁନୟନା ତଥାପି ଆସିଲା ନାହିଁ । ଅଣ୍ଡା ଆମ୍‌ଲେଟ୍ ଥଣ୍ଡା ହେଲା । କଫି ବି । ଅନିଚ୍ଛା ସତ୍ତ୍ୱେ ଥଣ୍ଡା ହେଇଯାଇଥିବା କଫି କପ୍‌ଟା ଶେଷ କଲା ଗୌତମ ।

ସୁନୟନାର ଦେଖା ନାହିଁ । ଟି.ଭି. ଅନ୍ କଲା । ସଂଧ୍ୟା ସାତଟାର ସମ୍ବାଦ ଆରମ୍ଭ ହୋଇଗଲାଣି । ସୁନୟନାର ମୋବାଇଲ୍ ନମ୍ବର ଡାଏଲ୍ କଲା । ସୁଇଚ୍ ଅଫ୍

ଅଛି । ବିରକ୍ତ ହେଲା ଗୌତମ । ସୁଇଚ୍‌ଟା କାହିଁକି ଅଫ୍ କରେ ଯେ ! ହଜାର ଥର ତାକୁ ତାଗିଦ୍ କରିଛି, ବାହାରକୁ ଗଲେ ମୋବାଇଲ୍ ସୁଇଚଟା ଅନ୍ କରିବା ପାଇଁ । ମିଟିଂରେ ଥିଲେ ଭାଇବ୍ରେସନ୍ ମୋଡ୍ ରେ ରଖିବା ପାଇଁ । କିନ୍ତୁ ସୁନୟନାର ସେଥିକି ଖାତିର୍ ନାହିଁ ।

ଅନ୍ୟମନସ୍କ ହୋଇ ସେ ଟି.ଭି. ପରଦା ଉପରେ ଦୃଷ୍ଟି ନିକ୍ଷେପ କଲା । ତଳେ କ୍ୟାପସନ୍‌ରେ ଦେଉଥିବା ସମ୍ବାଦଟିଏ ତାକୁ ସ୍ତବ୍ଧ କରିଦେଲା । ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଗଲା କି ଆଉ ?

ତା' ଦେହ ଝାଳ ହୋଇଗଲା । ଗତ ରାତିର ଅନୁଭବ ପରି ।

ଆଉଥରେ ଟି.ଭି. ପରଦାରେ ଭାସି ଭାସି ଆସିଲା ସମ୍ବାଦଟି ।

"କୋଣାର୍କ ପୁରୀ ବେଳାଭୂମି ରାସ୍ତାରେ ଏକ ଯାତ୍ରୀବାହୀ ବସ୍‌ରୁ ମହିଳାଙ୍କୁ ତଳକୁ ଟାଣିଆଣି ଗଣଧର୍ଷଣ ।"

ଗୌତମର ମୁଣ୍ଡଟା ବୁଲେଇ ଦେଲା । ସେ କ୍ଳାନ୍ତ ହୋଇ ବସିପଡ଼ିଲା ସୋଫା ଉପରେ । ସୁନୟନା ସେହି ରାସ୍ତାରେ ବସ୍ ଧରେ । ସେ ପୁଣିଥରେ ତା' ମୋବାଇଲ୍‌କୁ ଚେଷ୍ଟା କଲା ।

ସୁଇଚ୍ ଅଫ୍ ଅଛି । ତଥାପି ବାରମ୍ବାର ନମ୍ବର ଡାଏଲ୍ କରିଚାଲିଲା ।

ଅସ୍ଥିର ହୋଇପଡ଼ିଲା ଗୌତମ । ସୋଫାରୁ ଉଠିପଡ଼ି କୋଠରୀ ସାରା ପଦଚାରଣ କଲା ।

ମହିଳାଟି ସୁନୟନା ନୁହେଁ ତ ? ନିଜ ଚିନ୍ତାରେ ନିଜେ ବିରକ୍ତ ହେଲା । ମନେମନେ ନିଜକୁ ଅଭିସଂପାତ ବି ଦେଲା ।

ଏମିତି ହୋଇ ନପାରେ । ସୁନୟନା ଭଳି ଝିଅର କେହି ଶତ୍ରୁ ନାହାନ୍ତି । ଯଦି ସତକୁ ସତ ସେ ସୁନୟନା ହୋଇଥାଏ ?

ନା-ଈଶ୍ୱରଙ୍କ ଉପରେ ସୁନିର ଅଶେଷ ଭରସା । ତା' ଈଶ୍ୱର ତା'ବିଶ୍ୱାସକୁ ଆଦୌ ଅସମ୍ମାନ କରିବେନି ।

-ତେବେ ସୁନୟନାର ଆଜି ଏତେ ବିଳମ୍ବ କାହିଁକି ?

-ଗୌତମର ଆଉ ଧୈର୍ଯ୍ୟ ନଥିଲା ।

ତାର ପାଟି କରି କାନ୍ଦିବାକୁ ଇଚ୍ଛା ହେଉଥିଲା ।

ନିଜକୁ ଆଉ ନିୟନ୍ତ୍ରଣରେ ରଖିପାରିଲା ନାହିଁ ।

ଦାଣ୍ଡ କବାଟ ଖୋଲି ସେ ବାହାରକୁ ବାହାରି ଆସିଲା ।

ମଟର ସାଇକେଲ୍ ଷ୍ଟାର୍ଟ କରିବାକୁ ଚାହିଁଲା ।

ସେ ସୁନୟନାକୁ ଖୋଜିବ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେଉଁଠି ଥିଲେ ବି ସେ ତାକୁ ଉଦ୍ଧାର କରି ଆଣିବ । ସବୁ ବଳାତ୍କାରୀମାନଙ୍କୁ ଗୋଟି ଗୋଟି କରି ହତ୍ୟା କରିବ । ହାତ ମୁଠାମୁଠା କରି କ୍ରୋଧରେ ଅଜ୍ଞାନ ହୋଇଉଠୁଥିଲା ଗୌତମ ।

ଗୌତମର ସବୁ ଆଶଙ୍କା ଉଦ୍‌ବେଗ ଓ ଉତ୍ତେଜନାକୁ ପ୍ରଶମିତ କରି ସବୁଦିନ ଭଳି ସଦ୍ୟବନ୍ଧନମୁକ୍ତ ପ୍ରାଣୀଟି ପରି ଏକରକମ୍ ଡେଇଁ ଡେଇଁ ଆସୁଥିଲା ସୁନୟନା ।

"ଆଜି ଏ.ଡି.ଏମ୍ (ADM) ଆମ ଅଫିସ୍‌କୁ ଇନ୍‌ସ୍ପେକ୍ସନ୍‌ରେ ଯାଇଥିଲେ । ଠିକ୍ ସମୟରେ ଷ୍ଟପେଜକୁ ଆସିପାରିଲି ନାହିଁ । ବସ୍ ଛାଡ଼ିଦେଲା । । ADMଙ୍କ ଜିପ୍‌ରେ ଆସିଲି ।"

ବିସ୍ଫୋରଣ କଲାପରି ଗୌତମ କହିଲା । ଫୋନଟିଏ କରିପାରିଲନି ? ସେଥିରେ ପୁଣି ଦିନସାରା ସୁଇଚଟା ଅଫ୍ କରି ରଖିଛ ?

ଗୌତମକୁ ଏମିତି ଅଧୈର୍ଯ୍ୟ କେବେ ଦେଖି ନଥିଲା ସୁନୟନା । ଟିକେ ସଂକୁଚିତ ହୋଇ କହିଲା-

ଆରେ ନାଇମ ! ମୁଁ ଆଜି ମୋବାଇଲ ନେଇ ନଥିଲି । ବେଟରୀ ଡାଉନ୍ ଥିଲା ତ ! ସେଥିପାଇଁ ସୁଇଚ୍ ଅଫ୍ ଦେଖାଉଥିବ ।



# ବସାବାହୁଡ଼ା ପକ୍ଷୀ

ଶାଳପତ୍ରର ଦନାଭିତରେ ଥିବା ବଡ଼ାଛତୁତକ ଅଗଣାରେ ଅଜାଡ଼ିଦେଇ ପାକ୍‌ଲୀ କହିଲା-

"ମାଆ ! ବଣତ ସଫା ହୋଇଗଲା, ଆଉ ବଡ଼ା କୋଉଠି ମିଲ୍‌ସି ? ବଣସାରା ବୁଲି ବୁଲି ଏତିକି ବେଟି ଆଣିଲି ମା ! ଖାଲି ତମରି ପାଇଁ ।"

ଅଗଣାରେ କୁଢ଼ା ହୋଇଥିବା ଛତୁଗୁଡ଼ାକୁ ବିଶି ଆଙ୍ଗୁଠିରେ ଖେଳଉ ଖେଳଉ କହିଲି- "କେତେ ଟଙ୍କା ନେବୁ ?"

ସେ କହିଲା- "କୋଡ଼ିଏ ଟଙ୍କା ।"

"କୋଡିଏ ଟଙ୍କା ? ତୁ ଭାରି ଠକ ହେଲୁଣି ପାକ୍‌ଲୀ । ଏତିକି ବଡ଼ାକୁ ତୁ ଗତ ବର୍ଷ ଦଶ ଟଙ୍କାରେ ଦେଉଥିଲୁ ।"

"ଗତ ବରଷ୍ କୁଲି ଥିଲା ପଚିଶ ଟଙ୍କା । ଏଷୁ (ଏ ବରଷ) ପଚାଶ ଟଙ୍କା । ବଡା ଦର ବଢ଼ିବ ନାଇଁକି ମାଆ ?" ହସି ହସି କହିଲା ପାକ୍‌ଲୀ ।

ମୁଁ ଟଙ୍କା ପନ୍ଦରଟା ତା' ହାତକୁ ବଢ଼େଇ ଦେଇ କହିଲି- "ଏତିକି ନେ । ଆଉ ବାକି ଯାହା ରହିଲା ତୋ ବାହାଘର ବେଳେ ଦେଇଦେବି ଯେ ତୋ ଶାଶୁ ଘରକୁ ନେବୁ ।"

ପେଣ୍ଟାଏ କୁରେଇଫୁଲ ପରି ହସି ହସି ଗଡ଼ିଗଲା ପାକ୍‌ଲୀ ।

"ଆମେ ଗଡ଼ିଆ ଲୋକ ହେଇଚୁ କି ? ଶାଶୁ ଘର୍‌କେ ଡାବୁ ନେବୁ ? ମନୁଷ୍ ପିଲା ଆମକୁ ଡାବୁ ଦେସି ଆର୍ ନେସି ।"

"ହଉ ଯା ଯା । ବାସନତକ ମାଜି ଦେ । ବେଳ ଆସି ଏତେ ହେଲାଣି ।"

ଆଜିକ କରିଦେଉଚି ମାଆ । କାଲିଠୁଁମୁଇଁ ନାଇଁ ଆସେ ।

ମୁଁ ଆତଙ୍କିତ ହେଲା ପରି କହିଲି - "କାହିଁକି ? ତତେ କିଏ କ'ଣ କହିଲା ?"

"ନାଇଁ ମା । ମତେ କିଏ କିସ୍ ପାଇଁ କହିବ ? କାଲି କୁଲି କାନ୍‌ଟ୍ରାଇଟ୍ ଆସିଥିଲା ଘର୍‌କେ । ଦିନ୍‌କେ ପଚାଶ ଲେଖାଁ ଦେସି । ମାସକେ ପନ୍ଦରଶହ ଟଙ୍କା । ରୋଡ଼୍ ରାସ୍ତା କାମ୍ ।"

ପାକ୍‌ଲୀ ଆମ ଘରର ଠିକା ଚାକରାଣୀ । ପାଚିଲା ଆମ୍ବ ଭଳି ଗୋରା ତକ୍‌ତକ୍ ଚେହେରା । ସେଇଥିପାଇଁ ତା' ଜେଜୀ ବୁଢ଼ୀ ତା' ନାଁ ପାକ୍‌ଲୀ ଦେଇଥିଲା ବୋଲି ସେ କହେ । ବଳିଲା ବଳିଲା ଦେହ । କାନ୍ଧ ଉପରେ ଗଣ୍ଠିଦେଇ ଗାଣ୍ଠି ମାରି ପିନ୍ଧେ ଶାଢ଼ୀ । ସକାଳେ ଘଣ୍ଟାଟିଏ ଓ ଉପରବେଳା ଘଣ୍ଟାଟିଏ ନିର୍ଦ୍ଧାରିତ ସମୟରେ ଆସେ ଓ ପୂର୍ବ ଚୁକ୍ତି ଅନୁସାରେ ବାସନମଜା, ଲୁଗାସଫା, ଘରପୋଛା କାମକରି ସେ ଚାଲିଯାଏ । ଆମ କଲୋନୀରେ ଚାରି ପାଞ୍ଚଟି ଘରକୁ ସେ ସମ୍ଭାଳି ଥାଏ । ତା' କାମରେ ସେ ଖୁବ୍ ନିୟମିତ । ଉଦୁଉଦିଆ ଦ୍ୱିପ୍ରହର ହେଉ କି ଧାରା ଶ୍ରାବଣ, ଶୀତ ଦିନର ହାଡ଼ଥରା ଶୀତ ହେଉ କି ବସନ୍ତର ଫୁଲଫୁଟା ଋତୁ । ସବୁଦିନ ସମସ୍ତଙ୍କ ଘରେ ମୁହଁ ମାରିଦେଇ ଯାଏ । ସଜଫୁଟା ମଲ୍ଲୀଫୁଲ ପରି ସେ ସଦା ହସହସ । ଅକାଳେ ସକାଳେ ପାକ୍‌ଲୀର ଦେହ ମୁଣ୍ଡ ହେଲେ ଚଡ଼କ ପଡ଼ିଯାଏ କଲୋନୀରେ । କାହାଘରେ ପିଲାଏ ଠିକ୍ ସମୟରେ ସ୍କୁଲ୍ ଯାଇପାରନ୍ତି ନାହିଁ ତ କାହାର ରୋଷେଇ ଡେରି ହେବାରୁ ସ୍ୱାମୀ ସ୍ତ୍ରୀ କଳି ଆରମ୍ଭ ହୋଇଯାଏ । କୋଉଠି ରୋଗୀଣା ଶାଶୁଙ୍କୁ ଔଷଧ ଦେବା ପାଇଁ ବୋହୂ ଭୁଲିଯାଏ ତ କାହାର ଠାକୁର ଉପାସ ରହନ୍ତି । ସମସ୍ତଙ୍କ ଘରେ ଜମିଯାଏ ପାହାଡ଼ ପରି ବାସନ । ତା' ପରଦିନ ପାକ୍‌ଲୀ ଗୁରୁଗୁରୁ ହେଇ ଗୋଡ଼ ହାତ କଚାଡ଼ି ସେ ବାସନତକ ଧୁଏ । ସେଦିନ ସେ ସମସ୍ତଙ୍କୁ ପଦେ ଦୁଇପଦ ଶୁଣାଇବାକୁ ବି ଛାଡ଼େ ନାହିଁ । ଏସବୁ ସତ୍ତ୍ୱେ କଲୋନୀରେ ସେ ସମସ୍ତଙ୍କର ଆଦରଣୀୟା । ବର୍ଷରେ ମଣ୍ଡେଇକୁ ମଣ୍ଡେଇ ପ୍ରତି ଘରୁ ଖଣ୍ଡେ ଲେଖାଏଁ ନୂଆ ଶାଢ଼ୀ ହେଲେ, ପାଞ୍ଚଖଣ୍ଡ ଶାଢ଼ୀ ପାଏ । ରଥଯାତ୍ରା ଗୁଣ୍ଡିଚା, ଦିଆଲି, ଦଶହରା ଓ ଶିବରାତ୍ରୀ ଭଳି ପୂଜା ପାର୍ବଣରେ କିଛି ଯାତ୍ରା ଖର୍ଚ୍ଚ ବି । ଏସବୁ ତାର ମାସିକ ପାରିଶ୍ରମିକକୁ ଛାଡ଼ି । ସୁରୁଖୁରୁରେ କଟିଯାଏ ପାକ୍‌ଲୀର ଦିନ । ଘରେ ବୁଢ଼ା ବାପାମାଆ ବଣରୁ ଛତୁ, ମହୁଲ, ବଡ଼ା, ଚାପଡ଼ା (କାଇ ଅଣ୍ଡା), କେନ୍ଦୁପତ୍ର ଆଦି ଆଣି ବଜାରରେ ବିକ୍ରି କରନ୍ତି । ସେଥିରୁ ଦୁଇ ପଇସା ବାହାରେ । କେତେବେଳେ ବୁଢ଼ାର ମଦପାଣି ପାଇଁ ହେଉ କି ବୁଢ଼ୀର ଜ୍ୱର ନୂଆଁଇ ପାଇଁ ହେଉ ।

ଏବେ ପାକ୍‌ଲୀ ଠିକ୍ କରିଛି କୁଲି କଣ୍ଟ୍ରାକ୍ଟର ସାଙ୍ଗରେ କୁଲି ଯିବ, ଆଉ ଚାରି ପାଞ୍ଚଜଣ ଝିଅ ଓ ପୁଅ ତା ସହ ମିଶିଛନ୍ତି ।

ପାକ୍‌ଲୀ ଆଉ ଆସିଲା ନାହିଁ ।

ପାକ୍‌ଲୀକୁ ଦିନେ ଦେଖିଲି କଲେଜ ଯିବା ରାସ୍ତାରେ । ମୁଁ ପାଦରେ ଚାଲି ଚାଲି ଯାଉଥାଏ, ସିଏ ବାଲି ଭର୍ତ୍ତି ଡାଲାରେ ଆଉ କେତେଟା ଝିଅଙ୍କ ସହ ବସି ଯାଉଥିଲା ।

ସେଇ ଚଳନ୍ତା ଗାଡ଼ି ଉପରୁ ସେ ମତେ ଦେଖି ପାଟି କରି ଉଠିଲା ମାଆ ! ମାଆ !

ମୁଁ ମୁହଁ ଫେରାଇଲି । ହଠାତ୍ ଚିହ୍ନି ପାରିଲି ନାହିଁ ତାକୁ । ସେ ଗାଡିମାରି ଲୁଗା ପିନ୍ଧି ନଥିଲା । ଦେହରେ ଥିଲା ବ୍ଲାଉଜ୍ ଶାୟା । ତାର ନୁଖୁରା ଖଇରିଆ ବାଳ କେରାକୁ ନେଇ କାନମୂଳେ ଖୋସା କରି ନଥିଲା । ପନିଟେଲ୍ କରି ପଛକୁ ଛାଡ଼ିଥିଲା । ମୋ' ପାଖ ଦେଇ ଟ୍ରାକ୍ଟରଟା ଧକ୍ ଧକ୍ କରି ଗଡ଼ିଗଲା ଆଗକୁ । ମନେ ମନେ କହିଲି- "ସଭ୍ୟତାର ରଥଚକ୍ରରେ ପାକ୍‌ଲୀ ସାମିଲ୍ ହେଇଗଲା । ପିଲାମାନଙ୍କୁ ବୁଝେଇଲି, ଏଥର ନିଜ କାମ ନିଜେ କରିବା ଅଭ୍ୟାସ କର । ପାକ୍‌ଲୀ ଆଉ ଆସିବ ନାହିଁ ।"

ଅଷ୍ଟମ ଶ୍ରେଣୀରେ ପଢୁଥିବା ମୋ ପୁଅ କହିଲା- " କାହିଁକି ମାଆ ?

ମୁଁ କିଛି କହିବା ପୂର୍ବରୁ ନୂଆ ନୂଆ କଲେଜ ଯାଉଥିବା ଓ ସ୍କୁଲ୍‌ରେ ତର୍କ ପ୍ରତିଯୋଗିତାରେ ଭାଗନେଇ ସବୁବେଳେ ପୁରସ୍କାର ପାଉଥିବା ମୋ' ଝିଅ ତାକୁ ଚିଡ଼େଇଲା ଭଳି କହିଲା- "ତୁ ତ ସବୁବେଳେ କ୍ରିକେଟ୍ ଖେଳିବୁ । ଦେଶ ବିଦେଶର ଖବର କ'ଣ ରଖିଛୁ ଯେ ଜାଣିବୁ? ଏବେ ପରା ଘରୋଇ ଚାକର ଚାକରାଣୀ ପ୍ରଥା ସରକାର ନିଷିଦ୍ଧ କରିଛନ୍ତି ।" ତର୍କ ପ୍ରତିଯୋଗିତା ପାଇଁ ଘୋଷିଥିବା 'ଶିଶୁ ଶ୍ରମିକ ଉଚ୍ଛେଦ' ଶୀର୍ଷକ ଲେଖାରୁ ଶିକ୍ଷକୀୟ ଶୈଳୀରେ କିଛି ଉଦ୍ଧୃତ କରି ସେ ତାକୁ ବୁଝାଉଥିଲା ।

ପାକ୍‌ଲୀର ସ୍ମୃତିରେ ମହଳଣ ପଡ଼ି ଆସିଲା । ପ୍ରଥମେ ପ୍ରଥମେ ତାର ଆବଶ୍ୟକତା ସମସ୍ତେ ଅନୁଭବ କରୁଥିଲେ ବି କ୍ରମେ ଅଭ୍ୟାସରେ ପଡ଼ିଗଲା । ପିଲାମାନେ ବି ଧୀରେ ଧୀରେ ବଡ଼ ହେଉଥିଲେ । ନିଜ କାମ ନିଜେ କରିବାରେ ଅଭ୍ୟସ୍ତ ହୋଇଗଲେ । ଆଉ କାମ ବାଲୀର ଆବଶ୍ୟକତା ପଡ଼ିଲା ନାହିଁ ।

ଦିନେ ପାକ୍‌ଲୀ ମାଆ ତା'ର ନାକଫୁଲ ହଳକ ମୋ' ଆଡ଼କୁ ବଢ଼େଇ କହିଲା- "ମାଆ, ଏଇଟା ରଖି ମତେ ଟଙ୍କା ୫୦୦ ଦବ ।" ଏଇଠି କହିରଖେ, ପାକ୍‌ଲୀ ମାଆର ଏଇ ନାକଫୁଲ ଦୁଇଟା ହିଁ ସମ୍ବଳ । ଥିବା ନଥିବାକୁ ସେ ସେଇଟି ଧରି ମୋ' ପାଖକୁ ଆସେ । ମୋତେ ଶହେ କିମ୍ବା ଦୁଇଶହ ଟଙ୍କା ମାଗେ ଓ ମୁଁ ମନା କରିବା ସତ୍ତ୍ୱେ ଜବରଦସ୍ତ ଫୁଲହଳକ ମୋ' ପାଖରେ ଥୋଇଦେଇ ଯାଏ । ପୁଣି ତା'ହାତରେ ପଇସା ହେଲେ ମୋ' ପଇସା ଫେରେଇ ଦେଇ ସେଇଟାକୁ ନେଇଯାଏ । ଏଥରକ କିନ୍ତୁ ତାର ପାଞ୍ଚଶହ ଟଂକା ମାଗିବା ଦେଖି ମୁଁ କହିଲି- "ତୋ' ଝିଅ ପରା ରୋଜଗାର କରୁଛି ।"

ପାକ୍‌ଲୀ ମାଆ କହିଲା- "କି ରୋଜଗାର ମାଆ, ଯାହା ଆଣୁଛି ତ ଏଇ ରଇଜଳା ପେଟକୁ ନିଅଣ୍ଟ । ବୁଢ଼ାର ମଦପାଣି ଖରଚ ଅଛି । ଆଜିକାଲି ବଣରେ ତ ଆଉ କିଛି ମିଳୁନି । ପାକ୍‌ଲୀ ଯାହା ଆଣୁଛି, ସେଇଥିରେ ବଞ୍ଚିଛୁ ।"

"ବଞ୍ଚିଛୁ ତ ! ପୁଣି ଟଙ୍କା କ'ଣ କରିବୁ ?" ମୁଁ କହିଲି ।

"ସେଇ ପାକ୍‌ଲୀ ପାଇଁ । ସିଏ କ'ଣ ଆମ କଥା ଶୁଣୁଛି ? ସିଏ ଯିବ ଭୋବନିଶ୍ୱର । ବେଶି ପଇସା ରୋଜଗାର କରିବ । ସେଇ କାନ୍‌ଟ୍ରାଇଟ୍ ପରା ମତେଇଛି । ଆମ ବସ୍ତିର ଆଉ କେତେଜଣ ଟୋକାଟୋକୀ ବାହାରିଛନ୍ତି ।"

ପାଞ୍ଚଖଣ୍ଡ ଶହେଟଙ୍କିଆ ତା' ହାତକୁ ବଢ଼େଇ ଦେଉ ଦେଉ ମୁଁ କହିଲି- "ଯାଉ ! ଦେଶ ଦୁନିଆ ଦେଖି ଆସିବ । ଦୁଇପଇସା ରୋଜଗାର ବି କରିବ ।"

ସେ ଚିରାଚରିତ ଢଙ୍ଗରେ ନାକଫୁଲ ହଳକ ଅଗଣାରେ ଥୋଇ ଦେଇ କହିଲା- "ଆମେ ବଣ ମୁଲକର ମଣିଷ । ଏ ଗାଁ ଭୂଇଁରେ କୁଲିଭୂତି କରି ଚଳିବା ଲୋକ । ବିଦେଶ ଜାଗାରେ ଆମର କିଏ ଅଛି ? ଭଲ ମନ୍ଦରେ ସାହା ଭରସାହେବ ? ହଉ, ତାର ଯାହା ଇଚ୍ଛା ।"

ମନକୁ ମନ ଆହୁରି କ'ଣ ବିଡ଼ ବିଡ଼ ହୋଇ ସିଏ ତା' ଘର ମୁହାଁ ହେଲା ।

ମନେ ମନେ ଭାବିଲି ଗ୍ଲୋବାଲାଇଜେସନ୍ ଯୁଗ । ଗାଁଠାରୁ ଦୀର୍ଘ ଛଅଶହ କିଲୋମିଟର ଦୂରରୁ ଆସି ମୁଁ ବି ତ ପେଟ ପାଟଣା ପାଇଁ ଏଠି ପଡ଼ିରହିଛି । ପାକ୍‌ଲୀ ସେମିତି ତା ପେଟପାଟଣା ପାଇଁ ସେଇ ଦୂରତ୍ୱରେ କାମ କରିବ । କ୍ଷତି କ'ଣ ?

ପାକ୍‌ଲୀ ମା' ଚାଲିଗଲା । ପାକ୍‌ଲୀ ବି ଗଲା ରାଜଧାନୀ । ଏହା ଭିତରେ କେତେଦିନ ଏମିତି କଟିଯାଇଛି କେଜାଣି ? ହଠାତ୍ ଦିନେ ପାକ୍‌ଲୀ ମାଆ ଆସି ମୋ'ଦରଜା ଠକ୍ ଠକ୍ କଲା । ମୁଁ କବାଟ ଖୋଲି ଦେଖିଲି ତା' ମୁହଁରେ ହସର ଫୁଆରା । ସିଏ ମୋ' ହାତକୁ ପାଞ୍ଚଶହ ଟଙ୍କିଆ ନୋଟ୍ ସାଙ୍ଗକୁ ଆଉ ଖଣ୍ଡେ ଶହେ ଟଙ୍କିଆ ନୋଟ୍ ବଢ଼େଇ ଦେଇ କହିଲା- "ପାକ୍‌ଲୀ ପଠେଇଛି, ତମେ ଏସବୁ ରଖ ମାଆ ।"

ମୁଁ ୫୦୦ଟଙ୍କିଆ ନୋଟ୍ ଖଣ୍ଡକ ରଖି ଅବଶିଷ୍ଟ ୧୦୦ ଟଙ୍କା ନୋଟ୍‌ଟିକୁ ତା ଆଡ଼କୁ ବଢ଼େଇ ତାଗିଦ୍ କଲା ସ୍ୱରରେ କହିଲି- "ମୁଁ କ'ଣ ମହାଜନୀ କାରବାର କରୁଛି ବୋଲି ଭାବିଲୁ ଯେ, ମୋତେ ସୁଧ ଦେଉଛୁ ? ନେ ନେ ତୋ ପଇସା ।" ତା ନାକଫୁଲ ହଳକ ତା' ହାତକୁ ବଢ଼େଇ ଦେଉ ଦେଉ କହିଲି ।

ସେ ଆଉ ଶୁଣିଲା ନାହିଁ । ଏକମୁହାଁ ହୋଇ ଚାଲିଗଲା ।

ପାକ୍‌ଲୀ ଭୁବନେଶ୍ୱରରେ ଭଲରେ ଅଛି । ଭଲ ପଇସା ରୋଜଗାର କରୁଛି । ମନେ ମନେ ଆଶ୍ୱସ୍ତ ହେଲି ।

ଆଉଦିନେ । ଭୁବନେଶ୍ୱର ଆଚାର୍ଯ୍ୟବିହାର ଦେଇ ମୋ' ବସ୍ ପାସ୍ କରୁଥିଲା । ମୁହଁଟିଏ ଚିହ୍ନା ଚିହ୍ନା ଲାଗିଲା । ମୁହଁରେ ବହଳ ପାଉଡର ପ୍ରଲେପ ସାଙ୍ଗକୁ ଗାଢ଼ ରଙ୍ଗର

ଲିପ୍‌ଷ୍ଟିକ୍ ଓ ରଙ୍ଗବେରଙ୍ଗର ଶାଢ଼ୀ ଖଣ୍ଡେ ପିନ୍ଧିଥିବା ଝିଅଟା । ମୁଁ ଭଲକରି ନିରୀକ୍ଷଣ କଲି ଓ ସ୍ମୃତିକୋଷ ଉଖାରିଲି । ତାର ଆବଡ଼ା ଖାବଡ଼ା ବେହେଡ଼ା ଦାନ୍ତଦୁଇଟା ମତେ ନିଶ୍ଚିନ୍ତ କରିଦେଲା ଯେ ଇଏ ପାକ୍‌ଲୀ । ପାକ୍‌ଲୀର ଏ ଆଉ ଗୋଟିଏ ରୂପ । ତା' ସହ ଟିକେ କଥାବାର୍ତ୍ତା ହେବାପାଇଁ ଅଦମ୍ୟ ଆଗ୍ରହ ଥିଲେ ବି ପାରିଲି ନାହିଁ । ବସ୍ ଛାଡ଼ିଦେଲା ।

ପାକ୍‌ଲୀକୁ ଦେଖି ମନେହେଲା ରାଜଧାନୀର ଚାକଚକ୍ୟ ଭିତରେ ପାକ୍‌ଲୀ ନିଜକୁ ସାମିଲ୍ କରିଦେଲାଣି । ଗାତିମରାଠାରୁ ବ୍ଲାଉଜ୍ ଶାୟା ସହ ଅଞ୍ଚଳ ଲମ୍ୱେଇ ଶାଢ଼ୀ ପିନ୍ଧା ପର୍ଯ୍ୟନ୍ତ । କୁରେଇ ଫୁଲ ପେନ୍ଥାରୁ ଗାଢ଼ ଲିପ୍‌ଷ୍ଟିକ୍ ବୋଳା ଓଠ ପର୍ଯ୍ୟନ୍ତ ଇୟେ ଗ୍ଲୋବାଲାଇଜେସନ୍‌ର ପ୍ରଭାବ । ସମାଜର ଦ୍ରୁତ ପରିବର୍ତ୍ତନରେ ପାକ୍‌ଲୀ ବି ଅଂଶୀଦାର ହେଇଛି ।

ମୁଁ କିନ୍ତୁ ସାମିଲ୍ ହୋଇ ପାରୁନଥିଲି ମୋ ଚାରିପାଖର ମଣିଷମାନଙ୍କ ସହ । ଦୀର୍ଘ ୧୨/୧୩ ବର୍ଷ କେବିକେ ଜିଲ୍ଲାରେ ମୋ କର୍ମମୟ ଜୀବନ ବିତେଇଥିଲେ ବି ମୋ ଜନ୍ମମାଟିର ଆସକ୍ତି ମତେ ତଥାପି ଅତିଷ୍ଠ କରୁଥିଲା । ମହୋତ୍ସବମୟୀ ମହାନଗରୀରେ ନିଜେ ବଞ୍ଚିବା ଓ ପିଲାମାନଙ୍କୁ ଗଢ଼ିବାର ମୋହ ମୋତେ ମୋହାବିଷ୍ଟ କରିଥିଲା । କିନ୍ତୁ କେବିକେ ଛାପଥିବା ଅଞ୍ଚଳରୁ ମହାନଗରୀକୁ ବଦଳି ହେବାର ସୌଭାଗ୍ୟ ସମସ୍ତଙ୍କ ଭାଗ୍ୟରେ ସହଜରେ ଜୁଟେ ନାହିଁ । ସେଥିପାଇଁ ମୋତେ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ିଲା । ବିଭାଗୀୟ କିରାନୀ ପାଖରୁ ନିର୍ଦ୍ଦେଶକଙ୍କ ପର୍ଯ୍ୟନ୍ତ ପୁଣି କୁଜୀ ନେତାଠାରୁ ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ, କଳ ବଳ କୌଶଳ ସବୁକିଛି ପ୍ରୟୋଗ କରିବାକୁ ପଡ଼ିଲା । କିନ୍ତୁ ଉଦ୍ୟମ ବ୍ୟର୍ଥ ଗଲାନାହିଁ । ସର୍ବ ଶେଷରେ ସେଇ ମହାର୍ଘ ମୁହୂର୍ତ୍ତଟି ଓ ମୋର ବହୁ ବାଞ୍ଛିତ ବିଭବ ସ୍ୱରୂପ ବଦଳି ନିର୍ଦ୍ଦେଶନାମାଟି ମୋ ହସ୍ତଗତ ହେଲା । ଏଥିପାଇଁ ବେଶ୍ କିଛିଦିନ କର୍ମକ୍ଷେତ୍ରରୁ ଛୁଟି ନେଇ ଭୁବନେଶ୍ୱରରେ ରହିବାକୁ ପଡ଼ିଲା । ଡି.ପି.ଆଇ. ଅଫିସରୁ ହାତାହାତି ବଦଳି ଅର୍ଡର ଧରି ମୁଁ ମୋ' କର୍ମସ୍ଥଳୀ ଅଭିମୁଖେ ବାହାରିଲି । ଯେତେଶୀଘ୍ର ମୁଁ ସେଠାରୁ ଦାୟିତ୍ୱମୁକ୍ତ ହୋଇ ଆସି ଭୁବନେଶ୍ୱରରେ ମୋ କର୍ମମୟ ଜୀବନ ଆରମ୍ଭ କରିବି । ଏକ ଅଦମ୍ୟ ଉଲ୍ଲାସ ମୋତେ ଉଚ୍ଛ୍ୱସିତ କରିଦେଉଥିଲା । କାଉଣ୍ଟରରୁ ଟିକେଟ୍ ଖଣ୍ଡେ କିଣି ବରମୁଣ୍ଡା ବସ୍‌ଷ୍ଟାଣ୍ଡରେ ମୁଁ ନିର୍ଦ୍ଧାରିତ ବସ୍‌ରେ ଚଢ଼ିଗଲି । ବସ୍‌ରେ ମୋ ପାଇଁ ଉଦ୍ଦିଷ୍ଟ ସିଟ୍‌ରେ ବସିବାକୁ ଯାଉଛି ଯାହା ଦେଖିଲି ସେଥିରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସାଧାସିଧା, ନିରାଡ଼ମ୍ବର ଅଥଚ ଗଭୀର ଆତ୍ମବିଶ୍ୱାସର ଆଭା ନେଇ ମୋ' ପାଖ ସିଟ୍ ଅକ୍ତିଆର କରିଥିଲା ପାକ୍‌ଲୀ । ମୋତେ ଦେଖି ସେ ସ୍ମିତ ହସି ଅଭିବାଦନ ଜଣାଇଲା ।

ମୁଁ ଖୁବ୍ ଖୁସିଟାଏ ହେଇ କହିଲି- " କେମିତି ଅଛୁ ପାକ୍‌ଲୀ ?"

ନିରାସକ୍ତ କଣ୍ଠରେ ସେ କହିଲା- " ଭଲ" ।

ମୁଁ ଆବେଗ ପ୍ରବଣ ହେଇ କହିଲି- " ଜାଣିଛୁ ପାକ୍‌ଲୀ । ମୋର ଭୁବନେଶ୍ୱର ବଦଳି ହୋଇଗଲା । ପିଲାମାନେ ଭୁବନେଶ୍ୱରରେ ପଢ଼ିବେ । ମୁଁ ସପ୍ତାହେ ପରେ ପିଲାମାନଙ୍କୁ ନେଇ ଫେରି ଆସିବି । ଆଉ ତୁ ?"

ସେ ସେମିତି ନିଷ୍ପୃହ କଣ୍ଠରେ କହିଲା- "ମୋର ଆଉ ଆସିବାର ନାହିଁ ମା !"

ମୁଁ ଆଶ୍ଚର୍ଯ୍ୟ ହେଇ କହିଲି- "କାହିଁକି ? ତୁ ତ ତୋ' ମାଆ ସଙ୍ଗେ କେତେ କଟାଳ କରି ଏଠିକୁ ଆସିଥିଲୁ ।"

"ଏବେ ବୁଝୁଛି, ସେଇଟା ମୋର ଗୋଟାଏ ମସ୍ତବଡ଼ ଭୁଲ୍ ଥିଲା ।"

ଲକ୍ଷ୍ୟ କଲି ପାକ୍‌ଲୀ ଏ ଭିତରେ କଥାବାର୍ତ୍ତା କରିବାର ଶୈଳୀ ବେଶ୍ ଆୟତ୍ତ କରିନେଇଛି ।

ମୁଁ କହିଲି- " କାହିଁକି, ଏଠି ତ ହଜାର ହଜାର ଲୋକ ପେଟପାଟଣା ପାଇଁ ଅନବରତ ଖଟୁଛନ୍ତି । ବଞ୍ଚିବା ପାଇଁ ଜନ୍ଦାପିମ୍ପୁଡି ଧାର ଭଳି କେମିତି ସବୁ ଗାଁ'ରୁ ଇଆଡ଼କୁ ମୁହାଁଇଛନ୍ତି ଦେଖୁନୁ ।"

"ବଞ୍ଚିବା କ'ଣ ଏଇୟାକୁ କହନ୍ତି ମାଆ ? ଆମେ ବଣ ମୁଲକର ମଣିଷ । ଆମ ମନଟା ବି ସେମିତି ପାହାଡ଼ି ଝରଣା ଭଳି । ଆମେ କାହାରି ଫନ୍ଦିଫିକରରେ ନଥାଉ । ଆମ ସାଙ୍ଗରେ ଯିଏ ସେମିତି ଚାଲକୀ କଲା ତ ଆମେ ଛାଡ଼ିବା ଲୋକ ନୁହଁ ।"

ମୁଁ ଆଉଟିକେ ଉତ୍ସାହିତ ହୋଇ କହିଲି - "ତୋ ସାଙ୍ଗରେ କିଏ କି ଚାଲାକୀ କଲା କି ପାକ୍‌ଲୀ ?"

"ସବୁଗୁଡ଼ାକ ପିଶାଚ ମାଆ ! ମଣିଷଖିଆ ବାଘ । ଆମେ ବଣ ଜଙ୍ଗଲର ମଣିଷ । କାହା ସାଙ୍ଗରେ ମନ ଦିଆ ନିଆ ହେଲା ତ ତା' ସାଙ୍ଗରେ ଘରସଂସାର କରୁ । ଆମ ମୁଲକର ମଣିଷ ଏସବୁକୁ ପାପ ବୋଲି ଧରେ ନାହିଁ । ଗୋଟାଏ ମଣିଷ ଦୁଇ ତିନିଟା ସ୍ତ୍ରୀ ରଖିଲେ ବି ଦିନର ଆଲୁଅରେ ରଖେ । ଛାତିରେ ହାତ ବାଡ଼େଇ ରଖେ । ଲୁଚାଚୋରାରେ ନୁହେଁ । ହେଲେ ଦେହକୁ ନେଇ ଆମ ଜାତିରେ ବେପାର ଚାଲେ ନାହିଁ । ଆମ ଧରତୀ, ଆମ ଦେବତା ଆମ ମଣିଷମାନଙ୍କ ଆଖିରେ ଏଗୁଡ଼ାକ ବଡ଼ ପାପ ।"

"ତୁ ଏସବୁ କ'ଣ କହୁଛୁ ପାକ୍‌ଲୀ ?" ମୁଁ ପାକ୍‌ଲୀ ମୁହଁକୁ ଚାହିଁଲି । ତା'ଆଖିରେ ନିଆଁ ଜଳୁଥିଲା । ସିଏ ତା ଭୁବନେଶ୍ୱର ଅନୁଭୂତିରୁ ଯାହା କହିଲା ସେ ସବୁ ମୋଟାମୋଟି

ଥିଲା ଏମିତି । ପାକ୍‌ଲୀ ଯେଉଁ କଣ୍ଟ୍ରାକ୍ଟରର ସହ ଆସିଥିଲା ସିଏ ବିବାହର ମିଥ୍ୟା ପ୍ରତିଶ୍ରୁତି ଦେଇ ତା' ସହ ଶାରୀରିକ ସମ୍ପର୍କ ସ୍ଥାପନ କରି ଆସୁଥିଲା । ପାକ୍‌ଲୀ ପରେ ଜାଣିଲା ଲୋକଟା ବିବାହିତ । ତାର ଘରସଂସାର, ପିଲାଛୁଆ ଅଛନ୍ତି । କେବଳ ସେତିକି ନୁହେଁ, କିଛି ଲୋକଙ୍କଠୁ ପଇସା କରଜ କରି ସୁଝି ପାରି ନଥିବାରୁ ସେମାନଙ୍କ ସହ ବି ପାକ୍‌ଲୀକୁ ଶାରୀରିକ ସମ୍ପର୍କ ରଖିବାକୁ ବାଧ କରୁଥିଲା । ପାକ୍‌ଲୀ ଏହାର ପ୍ରତିବାଦ କରିବାରୁ ତାକୁ ମାଡ଼ ଗାଳି ଆଦି ଅକଥନୀୟ ଯନ୍ତ୍ରଣା ଦେଉଥିଲା । ଦୁର୍ଦ୍ଦାନ୍ତ ଲୋକଟା ସେତିକିରେ ସନ୍ତୁଷ୍ଟ ରହିନଥିଲା । ଗୋଟାଏ ମିଛ ବିଲ୍ ପାସ୍ କରିବାପାଇଁ ସେ ଜଣେ ବୃଦ୍ଧ ଇଂଜିନିୟରଙ୍କୁ ଭେଟି ଦେଇଥିଲା ତାକୁ । ପାକ୍‌ଲୀ କିନ୍ତୁ ଏସବୁ ଜାଣିପାରି ପିତଳ ଫୁଲଦାନୀ ଆଘାତରେ ଇଂଜିନିୟରକୁ ବେହୋସ୍ କରି କୋଠରୀ ଭିତରୁ ବାହାରି ପୋଲିସ ଥାନାକୁ ଧାଇଁଥିଲା । ଥାନା ଇନିସ୍‌ପେକ୍ଟର ପାକ୍‌ଲୀର ବୟାନ ଅନୁସାରେ କଣ୍ଟ୍ରାକ୍ଟରକୁ ଆରେଷ୍ଟ କରିଥିଲେ । ବୃଦ୍ଧ ଇଂଜିନିୟରଙ୍କୁ ବି ।

ପାକ୍‌ଲୀର ରାଜଧାନୀର ମୋହ ତୁଟିଗଲା । ସେ ପୁଣି ଫେରିଯାଉଛି ପ୍ରକୃତିର ଶାନ୍ତ ସୁନ୍ଦର କୋଳକୁ । ଯେଉଁଠି ମିଥ୍ୟାଚାର ନାହିଁ, କପଟତା ନାହିଁ । ବଞ୍ଚିବା ପାଇଁ ପ୍ରତିଯୋଗିତା ନାହିଁ । ମଣିଷର ନିରୀହ ନିଷ୍କପଟ ଜୀବନଧାରାରେ ପୁଣି ସେ ନିଜକୁ ସାମିଲ କରିନେବ । କୁରେଇ ଫୁଲରେ ଗଭା ସଜାଡ଼ିବ ତ ମହୁଲ ଫୁଲର ମହୁଆ ନିଶାରେ ଉନ୍ମତ୍ତ ହେବ । ବଣ ଜଙ୍ଗଲର ବାଘଭାଲୁଙ୍କ ସହ ବନ୍ଧୁତା କରିବ ସିନା ଏ ଧୋବଧାଉଳିଆ ମଣିଷଙ୍କ ସାଙ୍ଗେ ଆଦୌ ନୁହେଁ ।

ମୁଁ ଲକ୍ଷ୍ୟ କରୁଥିଲି- ରାଜଧାନୀର କୃତ୍ରିମ ମଣିଷ ପ୍ରତି ତାର ପ୍ରତି ଲୋମକୂପରେ ଯେମିତି ଘୃଣା ଆଉ ତାଚ୍ଛଲ୍ୟ ଭାବ ଫୁଟି ଉଠୁଥିଲା । ଝିଅଟା ଭାଙ୍ଗିପଡ଼ି ନଥିଲା ବରଂ ଗଭୀର ଆତ୍ମବିଶ୍ୱାସରେ ସେ ଉଜ୍ଜ୍ୱଳି ଉଠି ଫେରୁଥିଲା ଗାଁ ଭୂଇଁକୁ ।

ମୁଁ ଅନୁଭବ କଲି ମୁଖ୍ୟମନ୍ତ୍ରୀଙ୍କ ସୁପାରିଶରେ ଆଣିଥିବା ବଦଳି ଅର୍ଡରଟା ମୋ'କୋଳର ଭ୍ୟାନିଟି ବ୍ୟାଗ୍‌ରେ ଯେମିତି ଷାଠିଏ ମହଣ ବୋଝ ପାଲଟି ଯାଉଛି ଓ ମୋତେ ଚାପି ଦେଉଛି ରସାତଳକୁ । ମୁଁ ଅଣନିଃଶ୍ୱାସୀ ହୋଇଯାଉଛି । ଏକ ଅହେତୁକ ଉତ୍ତେଜନାରେ ମୁଁ ଚେନ୍ ଖୋଲିଲି ଭ୍ୟାନିଟିର । ଖାକି ରଙ୍ଗର ଲଫାପା ଭିତରୁ ବଦଳି ନିର୍ଦ୍ଦେଶଟା ସତେ ଅବା ମତେ ଗେଧମାଙ୍କଡ଼ ପରି ଦାନ୍ତ ନିକିଟି ଗୋଡ଼େଇ ଆସୁଛି । ମୁଁ ବ୍ୟସ୍ତ ବିବ୍ରତ ହୋଇ ପୁଣି ବ୍ୟାଗ୍‌ର ମୁହଁ ବନ୍ଦ କରି ଦୁଇ ପାପୁଲିକୁ ଲଦିଦେଲି ତା' ଉପରେ ।

ସେତେବେଳକୁ କଣ୍ଡକ୍ଟର ଗାଡ଼ିରେ ଷ୍ଟାର୍ଟ ଦେଇ ସାରିଥିଲା ।



## ସ୍ରଷ୍ଟାଙ୍କ ଅନ୍ୟାନ୍ୟ ସୃଷ୍ଟି

### ଗଳ୍ପ
୧. ରାଜଜେମା, ବିଲେଇ ଓ ଜୁଲି ପ୍ରସଙ୍ଗ
୨. ପିତୃଋଣ
୩. ସୁଲି ଅପାର ଭାତୁଡି
୪. ଅଭିଯୁକ୍ତା
୫. ମାଆ
୬. ନିର୍ବାଚିତ ଗଳ୍ପ
୭. କୁନ୍ତୀ
୮. ଗୀତ କୁଡିଆଣୀ

### ସ୍ତମ୍ଭ ସଂକଳନ
୧. ପ୍ରଗତି ଓ ପରମ୍ପରା
୨. ଦୃଷ୍ଟି ଓ ଦିଗନ୍ତ
୩. ପ୍ରଳୟ ପରର ଜୀବନ
୪. ନାରୀନୀତି ନିୟତି

### ସାହିତ୍ୟ ଆଲୋଚନା
୧. ନୀଳଶୈଳର ପଦଚାରୀ
୨. ସୁରେନ୍ଦ୍ର ମହାନ୍ତିଙ୍କ କଥା କୋଣାର୍କ

### ଇତିହାସ
୧. ଓଡ଼ିଶାର ଜାଲିଆନା ୱାଲାବାଗ ପାପଡା ହାଣ୍ଡିରେ ଗୁଳିକାଣ୍ଡ

### ଜୀବନୀ
୧. ଭୂମିପୁତ୍ର ବଗା ପୂଜାରୀ
୨. ମହମ୍ମଦ ବାଜୀ
୩. କଳାହାଣ୍ଡିର ଲୋକକଥା

### ଅନୁବାଦ
୧. ଗାନ୍ଧୀଙ୍କୁ ଫେରାଇ ଆଣିବା

**ଡଃ ବାସନ୍ତୀ ମହାନ୍ତି** ଓଡ଼ିଆ ସାରସ୍ୱତ ଜଗତର ଏକ ଶ୍ରଦ୍ଧାସିକ୍ତ ସର୍ଜନଶୀଳପ୍ରତିଭା । ଗଳ୍ପ, ପ୍ରବନ୍ଧ, ଭ୍ରମଣ ସାହିତ୍ୟ, କବିତା, ସାହିତ୍ୟ ସମାଲୋଚନା, ଇତିହାସ, ଜୀବନୀ, ଲୋକ ସାହିତ୍ୟ, ଅନୁବାଦ ଆଦି ବହୁବିଧ ବିଭାଗରେ ତାଙ୍କର ସାର୍ଥକ ଲେଖନୀ ଚାଳନା ତାଙ୍କୁ ଅଜସ୍ର ପାଠକୀୟତା ଅର୍ପଣ କରିଛି । ଶୋଷଣ କଷଣ ଓ ପୀଡ଼ନପିଷ୍ଟ ଜୀବନର ଜୀବନ୍ତ ଚିତ୍ର ବର୍ଣ୍ଣନାରେ ତାଙ୍କ ସାରସ୍ୱତ ସୃଷ୍ଟି ସମୃଦ୍ଧ । ଜୀବନପଥରେ ଅଜସ୍ର ସଂଘର୍ଷ, ସଂଘାତ ମଧ୍ୟରୁ ମଣିଷ ବଞ୍ଚିବାପାଇଁ ଯେଉଁ ବୀଜମନ୍ତ୍ର ଆହରଣ କରେ, ତା'ର ଜୟଗାନରେ ଡଃ ମହାନ୍ତିଙ୍କ ଲେଖନୀ ଶତମୁଖ । ଓଡ଼ିଶାର ବହୁ ସାରସ୍ୱତ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତା ଓ ସମ୍ବର୍ଦ୍ଧିତା ।

ତାଙ୍କର ଅନ୍ୟାନ୍ୟ କୃତି ପରି **ଉତ୍ତରଣ** ଗଳ୍ପ ସଂକଳନଟି ମଧ୍ୟ ଓଡ଼ିଆ ଗଳ୍ପ ଜଗତରେ ବତୀଖୁଣ୍ଟ ସଦୃଶ ଜାଜ୍ୱଲ୍ୟମାନ ହେବ ବୋଲି ଆମେ ଆଶା କରୁଛୁ ।




ISBN - 13 978-81-89593-78-3

**A short stories collection by**
*Dr. Basanti Mohanty*
**Athena Books**
**Bhubaneswar-2**
**rkdas.athena@gmail.com**
**₹ : 120/-**